# କବି
# ଅଭିମନ୍ୟୁ ସାମନ୍ତସିଂହାର

ଅଧ୍ୟାପକ ଶ୍ରୀ ଜାନକୀବଲ୍ଲଭ ମହାନ୍ତି,
[ଭରଦ୍ୱାଜ]

ଗ୍ରନ୍ଥମନ୍ଦିର

# କବି
# ଅଭିମନ୍ୟୁ ସାମନ୍ତସିଂହାର

ଲେଖକ :
ଶ୍ରୀ ଜାନକୀବଲ୍ଲଭ ମହାନ୍ତି,
(ଭରଦ୍ୱାଜ)
ରେଭେନ୍‌ସା କଲେଜ, କଟକ



ପ୍ରକାଶକ :
ଶ୍ରୀ ଅଭିରାମ ମହାପାତ୍ର, ବି. ଏ.
ଗ୍ରନ୍ଥ ମନ୍ଦିର
କଟକ—୨ ବ୍ରହ୍ମପୁର

ମୁଦ୍ରକ
ଶ୍ରୀ ଜୟରାମ ମହାପାତ୍ର, ବି. କମ୍.
ଗ୍ରନ୍ଥ ପ୍ରକାଶିନୀ
କଟକ—୧

ପ୍ରଥମ ସଂସ୍କରଣ :
ଜାନୁୟାରୀ, ୧୯୬୮

ମୂଲ୍ୟ :
ଏକଟଙ୍କା

# କବି ଅଭିମନ୍ୟୁ ସାମନ୍ତସିଂହାର

**କବି ଜୀବନୀ—**

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯୁଗପ୍ରବର୍ତ୍ତକ ଭାବରେ ପରିଗଣିତ ନ ହେଲେହେଁ କବି ଅଭିମନ୍ୟୁ ଓଡ଼ିଶାର ବିଶିଷ୍ଟତମ କବିଭାବେ ସର୍ବଜନ ସ୍ୱୀକୃତ । ତାହାଙ୍କ ରଚିତ 'ବିଦଗ୍ଧ-ଚିନ୍ତାମଣି' ଓଡ଼ିଆ ସାହିତ୍ୟର ଏକ ଶ୍ରେଷ୍ଠ କାବ୍ୟ ରୂପେ ପରିଗୃହୀତ ହୋଇଥାଏ । 'ବିଦଗ୍ଧ ଚିନ୍ତାମଣି' ବ୍ୟତୀତ କବି 'ରସବତୀ' 'ପ୍ରେମକଳା' 'ପ୍ରେମ ଚିନ୍ତାମଣି' 'ସୁଲକ୍ଷଣା' ପ୍ରଭୃତି କାବ୍ୟ ଓ ବହୁ ଗୀତ-କାବ୍ୟ ରଚନା କରିଯାଇଅଛନ୍ତି । ତାହାଙ୍କ ରଚନାମାନଙ୍କ ମଧ୍ୟରୁ 'ବିଦଗ୍ଧ-ଚିନ୍ତାମଣି' ଓ 'ସୁଲକ୍ଷଣା' ବ୍ୟତୀତ କୌଣସି କାବ୍ୟ ଏ ପର୍ଯ୍ୟନ୍ତ ପ୍ରକାଶ ଲାଭ କରିନାହିଁ । ତାହାଙ୍କ ରଚିତ ଗୀତ-କବିତାମାନଙ୍କ ମଧ୍ୟରୁ କେତେଗୋଟି ମାତ୍ର ଜଣାଣ, ଚଉତିଶା, 'ବାଘ ବୋଲି' ଓ 'ଚଢ଼େଇ ଗୀତ' ପ୍ରକାଶିତ ହୋଇଥିଲେହେଁ ବହୁ ଗୀତ-କାବ୍ୟ ଏ ପର୍ଯ୍ୟନ୍ତ ଲୋକ—ଲୋଚନକୁ ଆସିନାହିଁ । ଓଡ଼ିଶାର ଏହି ବରେଣ୍ୟ କବିଙ୍କ ଜୀବନ ଚରିତ ତଥା 'ବିଦଗ୍ଧ ଚିନ୍ତାମଣି' କାବ୍ୟ ସମ୍ପର୍କରେ ସ୍ୱର୍ଗତ ମୃତ୍ୟୁଞ୍ଜୟ ରଥ 'ଉତ୍କଳ ସାହିତ୍ୟ' ପତ୍ରିକା ୧୮ଶ ଭାଗରେ ଯେଉଁ ଆଲୋଚନା କରିଥିଲେ ତାହା ଏ ପର୍ଯ୍ୟନ୍ତ ପ୍ରାମାଣିକଭାବେ ଗୃହୀତ ହୋଇଥାଏ । ଆଂଶିକଭାବେ ସେହି ପ୍ରବନ୍ଧକୁ ଭିତ୍ତିକରି କବିଙ୍କ ସଂକ୍ଷିପ୍ତ ଜୀବନ-ବୃତ୍ତାନ୍ତ ଏଠାରେ ବର୍ଣ୍ଣିତ ହେଲା ।

ବାଲିଆ ନିକଟବର୍ତ୍ତୀ ଗୋଲକୁଣ୍ଡ ଗ୍ରାମ କବିଙ୍କର ଜନ୍ମ ସ୍ଥାନ । ଏହା କଟକ ଜିଲ୍ଲା ଯାଜପୁର ସବ୍‌ଡ଼ିଭିଜନର ବରୁଆଁ ପ୍ରଗନ୍ନା ଅନ୍ତର୍ଗତ । କବିଙ୍କ ପୂର୍ବ ପୁରୁଷ ଜୟପୁର ଅନ୍ତର୍ଗତ ଭାବନଗରରୁ ଓଡ଼ିଶାକୁ ଆସି

ଏଠାରେ ସ୍ଥାୟୀଭାବେ ରହିଯାଇଥିଲେ ଓ କାଳକ୍ରମେ ଉତ୍କଳର ସମ୍ଭ୍ରାନ୍ତ ପରିବାରମାନଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରି ସେମାନଙ୍କ ସହିତ ମିଶି ଯାଇଥିଲେ । ଖୋର୍ଦ୍ଧାର ଭୋଇବଂଶୀୟ ରାଜାଙ୍କଠାରୁ ଏହି ବଂଶ ବାଲିଆ ଜମିଦାରୀ ଲାଭ କରିଥିବା ବିଷୟ ଜଣାଯାଏ । ଏହି ସୁପ୍ରସିଦ୍ଧ ଜମିଦାର ପରିବାର ସାମନ୍ତରାଜା ଭଳି ସମ୍ମାନିତ ହେଉଥିଲେ । କବି ନିଜ ଜନ୍ମସ୍ଥାନ ସମ୍ପର୍କରେ 'ବାଘ ଗୀତ' ବା 'ବାଘ ବୋଲି'ରେ ଲେଖିଛନ୍ତି:—

"ବାଲିଆ ବୋଲି ଯେ ଏକ ନଗର
ତହିଁ ନୃପତି ସାମନ୍ତ ସିଂହାର
ରସିକ ବିବେକୀ ବଡ଼ ଧାର୍ମିକ
ପ୍ରଶଂସା କରନ୍ତି ବହୁତ ଲୋକ ।"

ଶୁଣାଯାଏ ବାଲିଆର ନିକଟବର୍ତ୍ତୀ ସାତଜଣ ସାମନ୍ତଙ୍କୁ ଏକ ବିପଦରୁ ରକ୍ଷା କରିଥିବାରୁ ଏହି ବଂଶର କୌଣସି ବ୍ୟକ୍ତିଙ୍କୁ ସେହି ସାମନ୍ତମାନେ 'ସାମନ୍ତ ସିଂହାର' ଅର୍ଥାତ୍ 'ସାମନ୍ତ ଭୂଷଣ' ଉପାଧିରେ ଭୂଷିତ କରିଥିଲେ । ଏହି ବାଲିଆର ଅଦୂରରେ ବୌଦ୍ଧ କୀର୍ତ୍ତି ବିମଣ୍ଡିତ ଲଳିତଗିରି, ରତ୍ନଗିରି ଓ ଅରକ୍ଷିତ ଦାସଙ୍କ ପୀଠ ଓଲାସୁଣୀ ପାହାଡ଼ ଅବସ୍ଥିତ ।

କବିଙ୍କ ପିତାଙ୍କ ନାମ ଇନ୍ଦ୍ରଜିତ ସାମନ୍ତ ସିଂହାର, ପିତାମହଙ୍କ ନାମ ଖୋସାଲ ସାମନ୍ତ ସିଂହାର ଓ ପ୍ରପିତାମହଙ୍କ ନାମ ବନ୍ଦୀ ସାମନ୍ତ ସିଂହାର । ଇନ୍ଦ୍ରଜିତ ଅସୀମ ସାହସୀ, ରସିକ ଓ ଧର୍ମ ପରାୟଣ ବ୍ୟକ୍ତି ଥିଲେ । କବି ପିତାଙ୍କ ବୀରତ୍ୱ ଓ ସାହସିକତା ସମ୍ପର୍କରେ ବାଘ ଗୀତରେ ଉଲ୍ଲେଖ କରି ଅଛନ୍ତି—

"ଇନ୍ଦ୍ରଜିତ ସାମନ୍ତ ନାମ ସତ
ବାଘ ଛୁର ତାଙ୍କୁ କେତେକ ମାତ
ଯାହାଙ୍କ ଧନୁ ପେଟେ ଲୁହା ପାତ
ଗଜ କରୁଡ଼ି ଥିଲେ ଧରି ଦନ୍ତ" ।
ଏଡ଼େ ବଳବନ୍ତ, ବଢ଼ନ୍ତ ଦ୍ୱରଣ ପଳାଅ କ୍ରାନ୍ତ ।"

ଇନ୍ଦ୍ରଜିତଙ୍କର ଅଷ୍ଟମ ପତ୍ନୀଙ୍କ ସନ୍ତାନ ଥିଲେ ଅଭିମନ୍ୟୁ । ତାହାଙ୍କ ଜନ୍ମ ସମ୍ପର୍କରେ ନାନା ପ୍ରକାର ଅଲୌକିକ ବିଷୟ ଶୁଣାଯାଏ । ଜନୈକ ସାଧୁଙ୍କ ଦ୍ୱାରା ମନ୍ତ୍ରୌଷଧି ବଳରେ ଇନ୍ଦ୍ରଜିତ ଅଭିମନ୍ୟୁଙ୍କ ଭଳି ସୁପୁତ୍ର ଲାଭ କରିଥିବା ଶୁଣାଯାଏ । ଏହାଛଡ଼ା ଇନ୍ଦ୍ରଜିତ ପୁତ୍ରଲାଭ ଆଶାରେ ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଦ୍ୱାରା ଯଜ୍ଞାନୁଷ୍ଠାନ କରାଇବା ଯୋଗୁଁ ଖ୍ରୀ ୧୭୫୭ରେ ଅଭିମନ୍ୟୁ ଜନ୍ମ ଗ୍ରହଣ କରିଥିଲେ ବୋଲି କିମ୍ବଦନ୍ତୀରୁ ମଧ୍ୟ ଜଣାଯାଏ । ଅଭିମନ୍ୟୁଙ୍କ ମାତାଙ୍କ ନାମ ରୂଲଜୀ ଦେବୀ । ସେ ଉଦୟପୁର ( ଲଉଖିଆ ) ଗ୍ରାମର ବିଖ୍ୟାତ ପଟ୍ଟନାୟକ ପରିବାରର କନ୍ୟା ଥିଲେ । ଧର୍ମପରାୟଣତା ଯୋଗୁଁ ସେ ସଭିଁଙ୍କ ଶ୍ରଦ୍ଧାଭାଜନ ହୋଇଥିଲେ ।

ଶୈଶବରେ ଅଭିମନ୍ୟୁଙ୍କର ଶିକ୍ଷା ଗୁରୁ ଥିଲେ ବୈଷ୍ଣବ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା । ତତ୍କାଳୀନ ରୀତିରେ ସେ ଗଣିତ, ଅମର କୋଷ, ସଂସ୍କୃତ ବ୍ୟାକରଣ, ଶ୍ରୀମଦ୍ ଭାଗବତ ପୁରାଣ, ଉପେନ୍ଦ୍ର ଭଞ୍ଜଙ୍କ ରଚିତ କାବ୍ୟ-କବିତାଦି ଅଧ୍ୟୟନ କରିଥିଲେ । ପାର୍ଶୀ, ବଙ୍ଗଳା ଓ ମହାରାଷ୍ଟ୍ରୀ ଭାଷାରେ ସେ ଅଭିଜ୍ଞ ଥିବା ମଧ୍ୟ ଶୁଣାଯାଏ । ମାତୁଳାଳୟରେ ରହୁଥିବା ସମୟରେ ସେହି ଗ୍ରାମର ସୁପଣ୍ଡିତ ଝଙ୍କଧର ନାୟକଙ୍କ ସହିତ ତାଙ୍କର ପରିଚୟ ଓ ଆମରଣ ସାହିତ୍ୟିକ ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା । ୯-୧୦ ବର୍ଷ ବୟସରେ ସେ ଜନୈକ ବୈଷ୍ଣବ ସାଧୁଙ୍କଠାରୁ କୃଷ୍ଣମନ୍ତ୍ର ଉପଦେଶ ଲାଭ କରିଥିଲେ ଓ ତାହାକୁ ବିଧିପୂର୍ବକ ଜପକରି ସିଦ୍ଧିଲାଭ କରିଥିବା ସମ୍ପର୍କରେ କେତେକ ଅଲୌକିକ ବିବରଣୀ ଶୁଣାଯାଏ । ବୈଷ୍ଣବ କବି ସଦାନନ୍ଦଙ୍କ ପ୍ରଭାବରୁ ମଧ୍ୟ କବି ଶୈଶବରୁ ରାଧାକୃଷ୍ଣଙ୍କ ଲୀଳାପ୍ରତି ଆକୃଷ୍ଟ ହୋଇଥିଲେ ।

ଅଭିମନ୍ୟୁଙ୍କ ପିତା ଶିକାର ପ୍ରିୟ ଥିଲେ । କୈଶୋରାବସ୍ଥାରେ ଅଭିମନ୍ୟୁ ମଧ୍ୟ ତତ୍କାଳୀନ ରାଜକୁମାରମାନଙ୍କ ଭଳି ଗୁଳି ମାରିବା, ଖଣ୍ଡା ଖେଳିବା, କାଣ୍ଡ ବିନ୍ଧିବା, ଘୋଡ଼ା ଚଢ଼ିବା ପ୍ରଭୃତି ଶିକ୍ଷା କରିଥିଲେ । ପକ୍ଷୀଧରିବା ଓ ପକ୍ଷୀ ପାଳନରେ ଅଭିମନ୍ୟୁ କିପରି ଅଭିଜ୍ଞ ଓ ଅନୁରକ୍ତ

ଥିଲେ ତାହା ତାହାଙ୍କ ପ୍ରଣୀତ 'ଚଢ଼େଇଗୀତ' କବିତାରୁ ଉତ୍ତମରୂପେ ଜଣାଯାଏ । ଏକଦା ସେ ଶିକାର କରିବାକୁ ଯାଇ ଏକ ଚକ୍ରବାକ ପକ୍ଷୀକୁ ବାଣ ବିଦ୍ଧ କରିଥିଲେ । ମାତ୍ର ଏହା ଫଳରେ ଚକ୍ରବାକୀର କରୁଣକ୍ରନ୍ଦନ ଓ ଶଙ୍ଖାର ବିଚ୍ଛେଦ ଦୁଃଖ ତାହାଙ୍କ ହୃଦୟକୁ କରୁଣା ଓ ଅନୁଶୋଚନାରେ ବିଗଳିତ କରି ଦେଇଥିଲା । ସେହି ଦିନରୁ ସେ ପକ୍ଷୀ ଶିକାର କରିବା ଚିରଦିନ ପାଇଁ ପରିତ୍ୟାଗ କରିଥିଲେ ।

ପକ୍ଷୀପାଳନ ବ୍ୟତୀତ ରଙ୍ଗ ଓ ତୂଳୀ ସାହାଯ୍ୟରେ ବିବିଧ ଚିତ୍ର କର୍ମରେ ମଧ୍ୟ କବିଙ୍କର ଦକ୍ଷତା ଥିଲା । କବିଙ୍କ ରଚିତ କେତେକ ଚିତ୍ରପଟ୍ଟ ତାହାଙ୍କ ଜନ୍ମ ସ୍ଥାନରେ ରକ୍ଷିତ ହୋଇ ଥିବା ବିଷୟ ମୃତ୍ୟୁଞ୍ଜୟ ରଥ ଲେଖି-ଯାଇଅଛନ୍ତି । * । କବି ହାସ୍ୟ ରସିକ ଓ ବନ୍ଧୁ-ବତ୍ସଳ ଥିଲେ । ଚତୁର୍ଦ୍ଦଶ ବର୍ଷ ବୟସରେ କେନ୍ଦ୍ରାପଡ଼ାର ସୁପ୍ରସିଦ୍ଧ ଜମିଦାର ପରିବାରରେ ତାଙ୍କର ବିବାହ ହୋଇଥିଲା । ତାହାଙ୍କ ପତ୍ନୀ ବିମଳା ଦେବୀ ଗୁଣବତୀ, ବିଦୁଷୀ ଓ କୃଷ୍ଣ ଭକ୍ତ ପରାୟଣା ଥିଲେ । ଖ୍ରୀ: ୧୮୭୭ ରେ ଉନ୍ଦ୍ରଜିତ ସାମନ୍ତସିଂହାରଙ୍କ ମୃତ୍ୟୁ ହେଲା । ସେତେବେଳକୁ କବିଙ୍କ ବୟସ ଊନବିଂଶ ବର୍ଷ । ବିରାଟ ପରିବାର ଓ ୫୬ ଟି ମୌଜା ବିଶିଷ୍ଟ ବିରାଟ ଜମିଦାରୀର ସମସ୍ତ ଦାୟିତ୍ୱ ଅଭିମନ୍ୟୁଙ୍କ ଉପରେ ନ୍ୟସ୍ତ ହେଲା । ମାତ୍ର ଏହିସବୁ ବୈଷୟିକ ଦାୟିତ୍ୱ ଗ୍ରହଣ କରିବାକୁ ଅଭିମନ୍ୟୁଙ୍କର କୌଣସି ଆଗ୍ରହ ନଥିଲା । କନିଷ୍ଠ ଭ୍ରାତା ପୁରୁଷଙ୍କ ଉପରେ ରାଜ୍ୟର ପରିଚାଳନା ଭାର ଅର୍ପଣ କରି କବି କେବଳ ଶାସ୍ତ୍ରାଲୋଚନା, କାବ୍ୟ

* କବିଙ୍କ ରଚିତ ଏହି ଚିତ୍ରପଟ୍ଟ ଗୁଡ଼ିକର ସନ୍ଧାନ ଅଧୁନା ମିଳେ-ନାହିଁ । ହାତୀ ଦାନ୍ତର ଏକ ପାତଳା ଫଳକ ଉପରେ ତୂଳିରେ ଅଙ୍କା ଯାଇଥିବା ଏକ ସୁନ୍ଦର ଅବକ୍ଷ ଚିତ୍ରକୁ ଅଭିମନ୍ୟୁଙ୍କର ପ୍ରତିକୃତି ବୋଲି ତାହାଙ୍କ ବଂଶଧରମାନେ ଯତ୍ନରେ ତାହାଙ୍କ ଗୃହରେ ରଖି ଅଛନ୍ତି । ୧୯୭୫ ମସିହାରେ ଏହି ଲେଖକ ଉକ୍ତ ସୁଦୃଶ୍ୟ ପ୍ରତିକୃତିକୁ କବିଙ୍କ ଗୃହରେ ଦେଖିବାର ସୁଯୋଗ ପାଇଥିଲା ।

ପ୍ରଣୟନ ଓ ଈଶ୍ୱର ସେବାରେ ଆପଣକୁ ନିଯୁକ୍ତ ରଖିଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ଏହାହିଁ ଥିଲା ତାଙ୍କର ମୁଖ୍ୟ କର୍ତ୍ତବ୍ୟ । ଗୃହର ଇଷ୍ଟ ଦେବତା ରାଧାମୋହନଙ୍କ ପ୍ରାତ୍ୟହିକ ସେବାରେ ତାହାଙ୍କର ଅଧିକାଂଶ ସମୟ ଅତିବାହିତ ହେଉଥିଲା । ରାଧାମୋହନଙ୍କର ଏକ ସୁନ୍ଦର ମନ୍ଦିର ମଧ୍ୟ ସେ ନିର୍ମାଣ କରିଥିଲେ । ତାହା ଅଦ୍ୟାପି ବିଦ୍ୟମାନ ଅଛି ।

୫୦ ବର୍ଷ ବୟସରେ କବି ବୃନ୍ଦାବନ କ୍ଷେତ୍ର ଦର୍ଶନାଭିଳାଷୀ ହୋଇ ପରିବାର ବର୍ଗଙ୍କ ଠାରୁ ବିଦାୟ ନେଇ ଯାତ୍ରାରମ୍ଭ କରିଥିଲେ । ମାତ୍ର ଗୃହର ପ୍ରାୟ ଏକକୋଶ ଦୂରବର୍ତ୍ତୀ ହରିପୁର ଗ୍ରାମରେ ଉପସ୍ଥିତ ହେବା ସମୟରେ ତାହାଙ୍କର ଦେହ ଅବଶ ହୋଇ ପଡ଼ିଲା । ନିଜର ମୃତ୍ୟୁ ଆସନ୍ନ ବୋଲି ସେ ବୁଝି ପାରିଲେ; ଆପଣାର ଇଷ୍ଟ ଦେବ ରାଧାମୋହନଙ୍କ ପ୍ରତିମାକୁ ସେ ଗୃହରୁ ସେଠାକୁ ଅଣାଇଲେ ଓ ସେହି ବିଗ୍ରହଙ୍କୁ ନିରୀକ୍ଷଣ କରୁ କରୁ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଖ୍ରୀ: ୧୮୦୭ ଜ୍ୟେଷ୍ଠମାସ କୃଷ୍ଣ ସପ୍ତମୀ ଦିନ ଓଡ଼ିଶାର ଏହି ସୁପ୍ରସିଦ୍ଧ ଭକ୍ତକବିଙ୍କର ଦେହାନ୍ତ ହୋଇଥିଲା ।

## କବିଙ୍କ ସମକାଳୀନ ସମାଜ ଓ ସାହିତ୍ୟିକ ପରିବେଶ

କବି ଅଭିମନ୍ୟୁ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ସାହିତ୍ୟ ରଚନାରେ ବ୍ରତୀ ହୋଇଥିଲେ । ଏହି ସମୟରେ ଓଡ଼ିଶା ମରହଟ୍ଟା ଶାସନାଧୀନ ଥିଲା । ତତ୍ପୂର୍ବରୁ ପ୍ରାୟ ଦେଢ଼ଶହ ବର୍ଷ ପର୍ଯ୍ୟନ୍ତ ଓଡ଼ିଶା ମୁସଲମାନ ଶାସନାଧୀନରେ ରହିଥିଲା । ମୁସଲମାନ କର୍ତ୍ତୃତ୍ୱ ଲୋପ ପାଇଥିଲେ ହେଁ ମରହଟ୍ଟା ଅଧିକାର କାଳରେ ଓଡ଼ିଶାର ଜନ ସାଧାରଣ ଧନ-ଜୀବନ ବିଷୟରେ ନିଶ୍ଚିନ୍ତତା ଅନୁଭବ କରି ପାରୁନଥିଲେ । ଏହି ସମୟରେ ଦେଶରେ ଶିଳ୍ପ ବାଣିଜ୍ୟର ବିକାଶ ହୋଇ ପାରି ନଥିଲା । ଜନସାଧାରଣ ଏକ ପ୍ରକାର ଅଳସ ଜୀବନ ଯାପନ କରୁଥିଲେ । କ୍ଷୁଦ୍ର ସାମନ୍ତ ଓ ରାଜାମାନେ ମୃଗୟା, ଦ୍ୟୁତକ୍ରୀଡ଼ା ଓ ଇନ୍ଦ୍ରିୟ ସେବାଦିରେ ମଗ୍ନ ରହୁଥିଲେ । ତଥାପି ଏହି

ସମୟରେ ଓଡ଼ିଶାରେ ଗୀତ, ବାଦ୍ୟ, ନୃତ୍ୟ ଓ ସାହିତ୍ୟର ବିକାଶ ହୋଇଥିଲା । ମରହଟ୍ଟା ଶାସନ କାଳରେ କିପରି ରାଜସଭାମାନଙ୍କରେ ଗୀତ, ବାଦ୍ୟ ଓ ନୃତ୍ୟର ପ୍ରଚଳନ ଥିଲା, ତାହା ଅଭିମନ୍ୟୁଙ୍କ ପ୍ରାୟ ସମକାଳୀନ କବି ବ୍ରଜନାଥ ବଡ଼ଜେନାଙ୍କ 'ରାଜସଭା' ଖଣ୍ଡକାବ୍ୟରୁ ଜଣାଯାଏ ।

ଏହିପରି ଏକ କୃତ୍ରିମ ସମାଜରେ ଭୋଗ-ସର୍ବସ୍ୱ, ଆଳଂକାରିକ କୃତ୍ରିମତା ପୂର୍ଣ୍ଣ ସାହିତ୍ୟ ସୃଷ୍ଟି ହେବା ଏକାନ୍ତ ସ୍ୱାଭାବିକ । ତତ୍‌କାଳୀନ ଯୁଗ ରୁଚିରେ ଆଦି ରସାତ୍ମକ କାବ୍ୟ ଶ୍ରେଷ୍ଠକାବ୍ୟ ଭାବେ ପରିଗଣିତ ହେଉଥିଲା । ବିବିଧ ରାଗରାଗିଣୀ, ଅର୍ଥର ଦୁରୂହତା ଓ ଶବ୍ଦର କାଠିନ୍ୟ ଭିତରେ ସେ ଯୁଗର ପାଠକ କାବ୍ୟଚର୍ଚ୍ଚାର ଆନନ୍ଦ ଅନୁଭବ କରୁଥିଲେ ।

ଏତଦ୍‌ବ୍ୟତୀତ ବୈଷ୍ଣବ ଧର୍ମ ମଧ୍ୟ ସେହି ସମୟରେ ସମାଜ ତଥା ସାହିତ୍ୟ କ୍ଷେତ୍ରରେ ବିପୁଳ ପ୍ରଭାବ ବିସ୍ତାର କରିଥିଲା । ଅଧିକାଂଶ କବି ରାଧାକୃଷ୍ଣ ଲୀଳାକୁ ଉପଜୀବ୍ୟ କରି କାବ୍ୟ କବିତା ରଚନା କରୁଥିଲେ । ଏହି ରାଧାକୃଷ୍ଣ ଲୀଳାତ୍ମକ ସାହିତ୍ୟ ବିଷୟବସ୍ତୁ ଦୃଷ୍ଟିରୁ ଗତାନୁଗତିକ ହେଲେହେଁ ଏହା ଦେଶର ସାଂସ୍କୃତିକ ବିକାଶ ତଥା ସାଂସ୍କୃତିକ ପ୍ରତିରୋଧ ଲାଗି କମ୍ ସହାୟତା କରିନାହିଁ । ଦେଶରେ କ୍ଷାତ୍ରଧର୍ମ ଶିଥିଳ ହୋଇଯିବା ପରେ ବୈଷ୍ଣବ ଧର୍ମର ପ୍ରଚାର ଏ ଦେଶର ନୈତିକ ଜୀବନକୁ ସଂଯତ, ଶୁଦ୍ଧପୂତ କରିବାରେ ଯଥେଷ୍ଟ ସହାୟତା କରିଥିଲା । କୃଚ୍ଛ୍ରସାଧନ, ବୈରାଗ୍ୟ ଓ ଇନ୍ଦ୍ରିୟ ନିବାରିତ ସମାଜ ସମ୍ମୁଖରେ ଏହା ଏକ ନୈତିକ ଆଦର୍ଶ ଉପସ୍ଥାପିତ କରିଥିଲା ଓ ବହୁ ଜାତିରେ ବିଖଣ୍ଡିତ ହିନ୍ଦୁ ସମାଜରେ ଉଦାର ଧର୍ମନୈତିକ ସାମ୍ୟମୈତ୍ରୀ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥିଲା । ଫଳତଃ ବୈଷ୍ଣବଧର୍ମ ମଧ୍ୟଯୁଗରେ ହିନ୍ଦୁ ସମାଜର ସାଂସ୍କୃତିକ ପ୍ରତିରୋଧର ପ୍ରଧାନ ଆୟୁଧ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଧର୍ମ ତତ୍କାଳୀନ ଭାରତୀୟ ତଥା ଉତ୍କଳୀୟ ସାହିତ୍ୟ, ସଙ୍ଗୀତ ଓ ଶିଳ୍ପକଳାକୁ ବହୁ ଭାବରେ ପ୍ରଭାବିତ କରିଅଛି ।

## ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବ ଧର୍ମ—

ଓଡ଼ିଶା ଯୁଗେ ଯୁଗେ ବହୁ ଧର୍ମ ପ୍ରଚାରକଙ୍କ ଲୀଳା କ୍ଷେତ୍ର ଓ ପ୍ରଚାର ପୀଠ ହୋଇ ଆସିଅଛି । ବିଶେଷତଃ ବୈଷ୍ଣବ ଧର୍ମର ବହୁ ବିଶିଷ୍ଟ ପ୍ରଚାରକ ପୁରୀକୁ ଆଗମନ କରି ଏଠାରେ ସେମାନଙ୍କ ଧର୍ମମତ ପ୍ରଚାର କରି ଯାଇଅଛନ୍ତି । ମାତ୍ର ବିବିଧ ଧର୍ମମତ ପ୍ରଚାରିତ ହେବା ସତ୍ତ୍ୱେ ଏଠାରେ ଧର୍ମଗତ ବିରୋଧ ସଂଘଟିତ ହୋଇ ନଥିଲା । ପରନ୍ତୁ ବିବିଧ ଧର୍ମମତବାଦର ସୁସମନ୍ୱୟ ହିଁ ଏଠାରେ ସାଧିତ ହୋଇଥିଲା । ଓଡ଼ିଶାର ଜଗନ୍ନାଥ ଓ ଜଗନ୍ନାଥ ଧର୍ମ ହିଁ ଏହି ସମନ୍ୱୟର ପ୍ରତୀକ । ଓଡ଼ିଶାରେ ପ୍ରଚଳିତ ବୈଷ୍ଣବ ଧର୍ମ ଏହି ଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଗନ୍ନାଥ, ବଳରାମ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ପ୍ରଭୃତି ସାଧକ ଓ କବି-ମାନେ ଉତ୍କଳୀୟ ବୈଷ୍ଣବ ଥିଲେ ଓ କେତେକ ଧର୍ମ ସଂପ୍ରଦାୟର ଗୁରୁ ଭାବରେ ଗୃହୀତ ହେଉଥିଲେ । ତନ୍ମଧ୍ୟରୁ ଜଗନ୍ନାଥ ଦାସଙ୍କ ସଂପ୍ରଦାୟ 'ଅତିବଡ଼ୀ' ସଂପ୍ରଦାୟ ନାମରେ ପରିଚିତ । ଉତ୍କଳୀୟ ବୈଷ୍ଣବ ଧର୍ମ ସଂପର୍କରେ ପ୍ରାମାଣିକ ଗ୍ରନ୍ଥର ସନ୍ଧାନ ମିଳି ନଥିଲେ ହେଁ ଏହାର ସ୍ୱାତନ୍ତ୍ର୍ୟ ଅନସ୍ୱୀକାର୍ଯ୍ୟ ।

ଚୈତନ୍ୟଙ୍କୁ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଭାବେ ଗ୍ରହଣ କରା-ଯାଇଥାଏ । ମାତ୍ର ଚୈତନ୍ୟ ନିଜେ କୌଣସି ଧର୍ମ ସଂପ୍ରଦାୟ ଗଢ଼ି ଯାଇ ନଥିଲେ । ତଥାପି ତାହାଙ୍କୁ କେନ୍ଦ୍ର କରି ତାହାଙ୍କ ଜୀବଦ୍ଦଶାରେ ଏକାଧିକ ମତବାଦ ଓ ବୈଷ୍ଣବ ମଣ୍ଡଳୀ ଗଢ଼ି ଉଠିଥିଲା । ଏହି ଗୌଡ଼ୀୟ ଧର୍ମର ପ୍ରକୃତ ପ୍ରତିଷ୍ଠା କରିଥିଲେ ରୂପ, ସନାତନ, ଜୀବ, ଗୋପାଳ ଭଟ୍ଟ ଓ ରଘୁନାଥ ଦାସ ପ୍ରଭୃତି ବୃନ୍ଦାବନ ପ୍ରବାସୀ 'ଷଡ଼ ଗୋସ୍ୱାମୀ' ।

ସେହିମାନେ ହିଁ ଚୈତନ୍ୟଙ୍କ ଆଚରିତ ଓ ତାହାଙ୍କ ପ୍ରଚାରିତ ମତର ତାତ୍ତ୍ୱିକ ବ୍ୟାଖ୍ୟା, ସାଧନ ପଦ୍ଧତିର ବିସ୍ତାର-ବିଶ୍ଳେଷଣ ଓ ପ୍ରଚାର କରିଥିଲେ । ସେହି ଷଡ଼୍‌ଗୋସ୍ୱାମୀ ସଂସ୍କୃତରେ ବହୁ ତତ୍ତ୍ୱଗ୍ରନ୍ଥ, କାବ୍ୟ, ନାଟକ ଓ ଅଳଙ୍କାର ଗ୍ରନ୍ଥ ଲେଖି ଶାସ୍ତ୍ରୋକ୍ତ ବୈଧୀଭକ୍ତି ପରିବର୍ତ୍ତେ ରାଗାନୁଗା ଭକ୍ତି ତଥା ଚୈତନ୍ୟଙ୍କ ମତର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ଯାଇଅଛନ୍ତି ।

ସଂକ୍ଷେପରେ କହିଲେ, ଭଗବାନ ବ୍ରଜେଶତନୟ କୃଷ୍ଣ ପରମ ଆରାଧ୍ୟ ଦେବତା, ଶ୍ରୀକୃଷ୍ଣଙ୍କ ଲୀଳା କ୍ଷେତ୍ର ବୃନ୍ଦାବନ ପରମ ପୁଣ୍ୟପୀଠ, ବ୍ରଜବଧୂଙ୍କ ପରି ଭଗବାନଙ୍କ ଉଦ୍ଦେଶ୍ୟରେ ନିବେଦିତ ପ୍ରେମଭକ୍ତି ଭଗବାନଙ୍କ ଶ୍ରେଷ୍ଠ ଉପାସନା ଓ ପରମ ପବିତ୍ର ଭାଗବତ ଗ୍ରନ୍ଥ ପ୍ରାମାଣିକ ଓ ଧ୍ୟେୟ—ଏହାହିଁ ଥିଲା ଚୈତନ୍ୟଙ୍କ ଧର୍ମମତ ।

"ଆରାଧ୍ୟୋ ଭଗବାନ୍ ବ୍ରଜେଶତନୟସ୍ତଦ୍ଧାମ ବୃନ୍ଦାବନଂ
ରମ୍ୟା କାଚିଦୁପାସନା ବ୍ରଜବଧୂବର୍ଗେଣ ଯା କଳ୍ପିତା
ଶାସ୍ତ୍ରଂ ଭାଗବତଂ ପ୍ରମାଣମମଳଂ ପ୍ରେମାପୁମର୍ଥୋ ମହାନ୍,
ଶ୍ରୀ ଚୈତନ୍ୟ ମହାପ୍ରଭୋର୍ମତମିଦଂ ତତ୍ରାଦରୋନଃ ପରଃ ।"

ଜୀବମାନଙ୍କ ପ୍ରତି ଦୟା, ଈଶ୍ୱରଙ୍କ ଭକ୍ତି, ବିଶେଷତଃ ନାମ ଧର୍ମ ଓ ସମବେତ ନାମ ସଙ୍କୀର୍ତ୍ତନ ଏହାହିଁ ଚୈତନ୍ୟଙ୍କ ପ୍ରଚାରର ମୂଳମନ୍ତ୍ର ଥିଲା ।

ଚୈତନ୍ୟଙ୍କ ଜୀବନର ଶେଷ ଅଠର ବର୍ଷ ପୁରୀରେ ଅତିବାହିତ ହୋଇଥିଲା । ସେ ଓଡ଼ିଶାରେ ଅବସ୍ଥାନ କରୁଥିବା ସମୟରେ ସ୍ୱାଧୀନ ଓଡ଼ିଶାର ରାଜା ଥିଲେ ପ୍ରତାପରୁଦ୍ରଦେବ । ଓଡ଼ିଶାର ଲୋକମାନେ ସେତେବେଳେ ଅପେକ୍ଷାକୃତ ନିଶ୍ଚିନ୍ତ ଓ ନିରୁପଦ୍ରବରେ ରହି ଧର୍ମାଚରଣର ଅନୁକୂଳ ସୁବିଧା ଲାଭ କରିଥିଲେ । ମାତ୍ର ସେତେବେଳେ ମୁସଲମାନ-ଶାସିତ ବଙ୍ଗଳାରେ ଶାନ୍ତି ନଥିଲା । ହିନ୍ଦୁମାନଙ୍କ ମଧ୍ୟରେ ଆତ୍ମରଭ୍ରଷ୍ଟତା ପ୍ରବେଶ କରିଥିଲା; ସମ୍ଭବତଃ ଆଧ୍ୟାତ୍ମିକ ସାଧନାର ଅନୁକୂଳ ପରିସ୍ଥିତି ମଧ୍ୟ ନଥିଲା । ଏହି ଦୃଷ୍ଟିରୁ ତତ୍କାଳୀନ ସ୍ୱାଧୀନ ଓଡ଼ିଶାର ପୁରୁଷୋତ୍ତମ କ୍ଷେତ୍ର ହିଁ ଥିଲା ଭକ୍ତ ସାଧକଙ୍କର ଅନୁକୂଳ ଆଶ୍ରୟସ୍ଥଳ । ଏହି ସ୍ଥାନର ପଣ୍ଡିତ ଓ ଭକ୍ତମାନଙ୍କ ସାହଚର୍ଯ୍ୟ ଏବଂ ସର୍ବୋପରି ଜଗନ୍ନାଥଙ୍କ ସେବାର ସୁଯୋଗ ଚୈତନ୍ୟଙ୍କୁ ପୁରୀରେ ରହିବାକୁ ଆକୃଷ୍ଟ କରିଥିଲା । ଏତଦ୍‌ବ୍ୟତୀତ ରାୟ ରାମାନନ୍ଦଙ୍କ ପରି ସୁପଣ୍ଡିତ ଓ ଭକ୍ତଙ୍କର ସାହଚର୍ଯ୍ୟ ଛାଡ଼ିବାକୁ ମଧ୍ୟ ସେ କୁଣ୍ଠିତ ଥିଲେ ।

ରାୟ ରାମାନନ୍ଦ ଓଡ଼ିଶାର ଦକ୍ଷିଣାଞ୍ଚଳର ଶାସନକର୍ତ୍ତା ଥିଲେ । ଚୈତନ୍ୟ ପ୍ରେମଭକ୍ତି ତତ୍ତ୍ୱକୁ ରାୟ ରାମାନନ୍ଦଙ୍କଠାରୁ ଶୁଣିଥିବା ବିଷୟ କୃଷ୍ଣଦାସ କବିରାଜ ଚୈତନ୍ୟଙ୍କ ମୁଖରେ ହିଁ କୁହାଇଅଛନ୍ତି ।

"ଏସବ ଶିଖାଇଲା ମୋରେ ରାୟ ରାମାନନ୍ଦ
ଯେ ସବ୍ ଶୁନିତେ ହୟ୍ ପରମ ଆନନ୍ଦ ।
କହିନ ନା ଯାୟ୍ ରାମାନନ୍ଦେର ପ୍ରଭାବ
ରାୟ ପ୍ରସାଦେ ଜାନିଲୁ ବ୍ରଜେର ଶୁଦ୍ଧଭାବ ।"
(ଚୈତନ୍ୟ ଚରିତାମୃତ ୭।୫୨୦୭)

ଚୈତନ୍ୟଙ୍କ ଉତ୍କଳରେ ଅବସ୍ଥାନ ଓ ଧର୍ମପ୍ରଚାର ଫଳରେ ଓଡ଼ିଶାରେ ଗୌଡ଼ୀୟ ବୈଷ୍ଣବଧର୍ମ ପ୍ରସାର ଲାଭ କରିଥିଲା । ପରବର୍ତ୍ତୀକାଳରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଓ ଅଭିମନ୍ୟୁଙ୍କପରି ବହୁ କବି ଗୌଡ଼ୀୟ ପ୍ରେମ-ଭକ୍ତି ତତ୍ତ୍ୱକୁ ଉପଜୀବ୍ୟ କରି କାବ୍ୟ କବିତା ରଚନା କରିଥିଲେ । କବିସୂର୍ଯ୍ୟ ସଦାନନ୍ଦ ତାହାଙ୍କ 'ନିସ୍ତାନୀଳମଣି'ରେ ସ୍ପଷ୍ଟତଃ ଗୌଡ଼ୀୟ ମତବାଦକୁ ସ୍ୱୀକାର କରି ଯାଇଅଛନ୍ତି ।

ଉତ୍କଳୀୟ ବୈଷ୍ଣବ ଧର୍ମ ଗୌଡ଼ୀୟ ବୈଷ୍ଣବ ଧର୍ମଠାରୁ ବହୁ ପ୍ରାଚୀନ । ଚୈତନ୍ୟଙ୍କ ଧର୍ମ ପ୍ରଚାରର ବହୁ ପୂର୍ବରୁ ଏହି ସାଧନାର ପରମ୍ପରା ଚାଲି ଆସୁଅଛି । ଉତ୍କଳୀୟ ବୈଷ୍ଣବମାନେ ଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ (ଅବତାରୀ) ରୂପରେ ଓ ପୁରୀକୁ ନିତ୍ୟସ୍ଥଳୀ ରୂପରେ ଗ୍ରହଣ କରିଥାନ୍ତି । ମାତ୍ର ଗୌଡ଼ୀୟ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କୁ ପୂର୍ଣ୍ଣବ୍ରହ୍ମ ଓ ବୃନ୍ଦାବନକୁ ନିତ୍ୟସ୍ଥଳୀ ରୂପରେ ଗ୍ରହଣ କରିଥାଆନ୍ତି । ଉତ୍କଳୀୟ ଓ ଗୌଡ଼ୀୟ ଧର୍ମର ନାମମନ୍ତ୍ରରେ ମଧ୍ୟ ପ୍ରଭେଦ ପରିଲକ୍ଷିତ ହୁଏ । ଯଥା— ଉତ୍କଳୀୟ ନାମମନ୍ତ୍ର—

"ହରେରାମ ହରେରାମ ରାମ ରାମ ହରେ ହରେ
ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।"

ଗୌଡ଼ୀୟ ନାମ ମନ୍ତ୍ର :—

"ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେରାମ ହରେରାମ ରାମ ରାମ ହରେ ହରେ ।"

ଉତ୍କଳୀୟମାନେ ଯୋଗାଭ୍ୟାସ, ଷଡ଼ଚକ୍ର ଭେଦ ଓ କୁଣ୍ଡଳିନୀ ଶକ୍ତିର ଜାଗ୍ରତୀକରଣକୁ ଭଗବତ ଭକ୍ତି ସାଧନାର ସୋପାନ ରୂପେ ସ୍ୱୀକାର କଲେ ହେଁ ଗୌଡ଼ୀୟ ବୈଷ୍ଣବମାନେ ବିଷ୍ଣୁଙ୍କର ନାମସ୍ମରଣ, କୀର୍ତ୍ତନ, ବନ୍ଦନ ପ୍ରଭୃତି ନବଧା ଭକ୍ତିକୁ ଈଶ୍ୱର ଉପାସନାର ଅଙ୍ଗରୂପେ ଗ୍ରହଣ କରିଥାନ୍ତି । ଗୌଡ଼ୀୟ ବୈଷ୍ଣବମାନେ ଉଚ୍ଚ କଣ୍ଠରେ ସଂକୀର୍ତ୍ତନ ଓ ନାମ ଭଜନକୁ ବିଶେଷ ଗୁରୁତ୍ୱ ଦେଇଥାନ୍ତି, ମାତ୍ର ଉତ୍କଳୀୟ ବୈଷ୍ଣବମାନେ ନିରାକାର ଭଜନ, ଶୂନ୍ୟ ଭଜନ, ଓ ଶରୀର ଭେଦ ଭଜନକୁ ଅନୁସରଣ କରି ଆସନ୍ତି ।

ଉତ୍କଳୀୟ ଭକ୍ତ ଏହି ନିର୍ଗୁଣ ଭଜନ ବିଷୟ ବର୍ଣ୍ଣନା କରି ଲେଖିଛନ୍ତି :—

"ଯେମନ୍ତେ ନାମକୁ ଭଜନ କରିବ
ଛନ୍ଦିର ବନ୍ଧୁର ଶୁଣ
ପଦ୍ମ ଆସନରେ ସମାଧି ଯୋଗରେ
ଅନାହତେ ଥୋଇ ମନ ।
ଓଷ୍ଠ, କଣ୍ଠ, ତାଳୁ ଜିହ୍ୱାହିଁ ନ ଲାଗି
ଦନ୍ତ, ମୂର୍ଦ୍ଧନା, ଘଣ୍ଟିକା
ଏମନ୍ତ ଭଜନ କେ ଅବା କରିବ
ଶୁଣିଯା ଲାଗେ ତାଟକା ।"

ଗୌଡ଼ୀୟ ବୈଷ୍ଣବମାନେ ଭାଗବତୋକ୍ତ ନବଧା ଭକ୍ତିର ମହତ୍ତ୍ୱ ସ୍ୱୀକାର କରି ଆସନ୍ତି । ଭାଗବତରେ ପ୍ରହ୍ଲାଦର ଉତ୍ତର ପ୍ରସଙ୍ଗରେ ତାହାର ଉଲ୍ଲେଖ ଦେଖାଯାଏ । ଅସୁରରାଜ ହିରଣ୍ୟକଶିପୁ ତାହାର ପୁତ୍ର ପ୍ରହ୍ଲାଦକୁ

'କିପରି ଅଧ୍ୟୟନ କରୁଛ' ପଚାରନ୍ତେ ପ୍ରହ୍ଲାଦ ତାହାର ଉତ୍ତରରେ କହିଛି "ବିଷ୍ଣୁଙ୍କର ନାମ, ଗୁଣ-ଲୀଳା ଶ୍ରବଣ, କୀର୍ତ୍ତନ, ସ୍ମରଣ, ବିଷ୍ଣୁଙ୍କର ପାଦ ସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଏବଂ ବିଷ୍ଣୁଙ୍କ ନିକଟରେ ଆତ୍ମ ନିବେଦନ ଏହି ନବ ଲକ୍ଷଣ ବିଶିଷ୍ଟ ଭକ୍ତି ସାକ୍ଷାତଭାବେ ଭଗବାନଙ୍କୁ ଅର୍ପଣ କରି ତାହାର ଅନୁଷ୍ଠାନକୁ ମୁଁ ପୁରୁଷମାନଙ୍କର ଉତ୍ତମ ଅଧ୍ୟୟନ ବୋଲି ମନେକରେ ।"

"ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମ ନିବେଦନମ୍ ।
ଇତି ପୁଂସାର୍ପିତା ବିଷ୍ଣୌ ଭକ୍ତିଶ୍ଚେନ୍ନବଲକ୍ଷଣା
କ୍ରିୟେତ ଭଗବତ୍ୟ ଦ୍ଧାତନ୍ମନ୍ୟେହ ଧୀତ ମୂତ୍ତମ୍"

(ଶ୍ରୀମଦ୍‌ଭାଗବତ)

କବି ଅଭିମନ୍ୟୁ ଯେ ଏହି ଶୁଦ୍ଧାଭକ୍ତି ମାର୍ଗର ଅନୁଗାମୀ ଥିଲେ ଏହା କହିବା ଅନାବଶ୍ୟକ ।

## କବିଙ୍କ ଅନ୍ୟାନ୍ୟ ରଚନାବଳୀ—

କବିଙ୍କ 'ବିଦଗ୍ଧ ଚିନ୍ତାମଣି' କାବ୍ୟଟି ବିଗତ ଶତାବ୍ଦୀର ଶେଷ ଭାଗରେ କଟକ ପ୍ରିଣ୍ଟିଂ କମ୍ପାନୀ ପକ୍ଷରୁ ଗୌରୀଶଙ୍କର ରାୟଙ୍କ ଦ୍ୱାରା ପ୍ରଥମେ ପ୍ରକାଶିତ ହୋଇଥିଲା । କବିଙ୍କ ଜୀବନ ଚରିତ ତଥା ବିଦଗ୍ଧ ଚିନ୍ତାମଣି ସମ୍ପର୍କରେ ଉଲ୍ଲେଖଯୋଗ୍ୟ ମୂଲ୍ୟବାନ୍ ଆଲୋଚନା କରିଥିଲେ ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ରଥ । 'ଉତ୍କଳ ସାହିତ୍ୟ' ୧୮ଶ ଭାଗର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ ତାହାଙ୍କର ସେହିଠାରୁ ପ୍ରବନ୍ଧ ଏ ପର୍ଯ୍ୟନ୍ତ ପୁସ୍ତକାକାରରେ ପ୍ରକାଶିତ ହୋଇ ନ ଥିଲେହେଁ ତାହାର ମହତ୍ତ୍ୱ ଏଯାବତ୍ ସ୍ୱୀକୃତ ଲାଭ କରି ଆସୁଅଛି । ୰ ଜଗବନ୍ଧୁ ସିଂହ ମଧ୍ୟ ତାହାଙ୍କ 'ପ୍ରାଚୀନ ଉତ୍କଳ'ରେ କବିଙ୍କ କେତେକ ଅପ୍ରକାଶିତ କାବ୍ୟ ସମ୍ପର୍କରେ ଆଲୋଚନା କରିଥିଲେ । ପ୍ରାଚୀ ସମିତି ପକ୍ଷରୁ ୰ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଉଦ୍ୟମରେ ଏକ ଉପାଦେୟ ଭୂମିକା ସହ

ବିଦଗ୍ଧ ଚିନ୍ତାମଣିର ଶୁଦ୍ଧ ସଂସ୍କରଣ ୧୯୬୫ ମସିହାରେ ପ୍ରକାଶିତ ହୋଇଥିଲା ।

କବିଙ୍କ ପ୍ରାଥମିକ ରଚନାମାନଙ୍କ ମଧ୍ୟରୁ 'ସୁଲକ୍ଷଣା' କାବ୍ୟଟି ଅନ୍ୟତମ । ଆର୍ତ୍ତବଲ୍ଲଭଙ୍କ ମତରେ କବି ୨୭ ବର୍ଷ ବୟସରେ ଏହି କାବ୍ୟଟିକୁ ଶେଷ କରିଥିଲେ । ଦୁର୍ଯ୍ୟୋଧନଙ୍କ କନ୍ୟା ସୁଲକ୍ଷଣାଙ୍କ ସହିତ ଶାମ୍ବଙ୍କ ଗୁପ୍ତ ପ୍ରଣୟ ଓ ଏଥିରେ ନାରଦଙ୍କ ସହାୟତା ଓ ପରିଶେଷରେ ସେମାନଙ୍କ ବିବାହ ଏହି କାବ୍ୟର କଥାବସ୍ତୁ । ଷୋଳ ଛାନ୍ଦ ବିଶିଷ୍ଟ ଏହି କାବ୍ୟଟି ଉପେନ୍ଦ୍ର ଭଞ୍ଜଙ୍କ 'ସୁଭଦ୍ରା ପରିଣୟ' କାବ୍ୟ ସଦୃଶ 'ସ' ଆଦ୍ୟ ନିୟମରେ ରଚିତ ଓ ଏହାର ପ୍ରତ୍ୟେକ ଛାନ୍ଦ ମଧ୍ୟ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସର ବ-ପୂର୍ବ ସଂଖ୍ୟା ପରି ଷୋଳ ପଦ ବିଶିଷ୍ଟ । ଏହାର ପ୍ରତ୍ୟେକ ଛାନ୍ଦରେ ଷୋଳ ଗୋଟି ରାଗ ମଧ୍ୟ ବ୍ୟବହୃତ ହୋଇଅଛି । ସାର କଟୋର ଦେବଙ୍କ ଛତିଶ ଅଙ୍କରେ କବି ଏହି କାବ୍ୟଟିକୁ ସମାପ୍ତ କରିଥିବା ବିଷୟ ଏଥିରେ ଉଲ୍ଲେଖ କରିଅଛନ୍ତି । ଏଣୁ ଏହି କାବ୍ୟଟି ଖ୍ରୀ: ୧୭୭୩ରୁ ୧୭୮୬ ମଧ୍ୟରେ ରଚିତ ହୋଇଥିବା ସମ୍ଭବପର । ଏହି କାବ୍ୟଟି 'ମୁକୁର' ପତ୍ରିକାର ସମ୍ପାଦକ ସ୍ୱର୍ଗୀୟ ବ୍ରଜସୁନ୍ଦର ଦାସଙ୍କ ଦ୍ୱାରା ସମ୍ପାଦିତ ଓ ଷ୍ଟାର ପ୍ରେସ କଟକରେ ମୁଦ୍ରିତ ହୋଇ ଚଳିତ ଶତାବ୍ଦୀର ପ୍ରଥମ ଦଶକ ମଧ୍ୟରେ ପ୍ରକାଶିତ ହୋଇଥିଲା । ଏହି କାବ୍ୟଟି ବ୍ୟତୀତ ଅଭିମନ୍ୟୁଙ୍କ ରଚିତ ଅନ୍ୟ କେତେଗୋଟି କାବ୍ୟ ମଧ୍ୟ ବ୍ରଜସୁନ୍ଦରଙ୍କ ଦ୍ୱାରା ସଂଗୃହୀତ ହୋଇଥିବା ବିଷୟ ଉକ୍ତ କାବ୍ୟର ଭୂମିକାରୁ ଜଣାଯାଏ । "ଉତ୍କଳ ସାହିତ୍ୟ ସମାଜର ସେବକ ରୂପେ ମୁଁ ବହୁ ଯତ୍ନରେ ସାମନ୍ତ ସିଂହାରଙ୍କ କେତେକ କାବ୍ୟ ସଂଗ୍ରହ କରିଅଛି ଓ ତାହା କ୍ରମଶଃ ପ୍ରକାଶ ପାଇବାର ଆଶା ପୋଷଣ କରେ ।" (ପୃ: ୪)

ଅଭିମନ୍ୟୁଙ୍କ ରଚିତ 'ଯାନକର ଜଣାଣ ଚଉତିଶା'ରେ ବୈଷ୍ଣବ-ଜନୋଚିତ ଭକ୍ତ ପ୍ରାଣର ଯେଉଁ ଆକୁଳତା ପ୍ରକାଶ ପାଇଅଛି ତାହା ଅତୀବ ମର୍ମସ୍ପର୍ଶୀ । ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦରେ 'ଝ' 'ବର୍ଣ୍ଣରେ

ଯେପରି 'ଟାଣ' ଶବ୍ଦ ଓ 'ଠ' ବର୍ଣ୍ଣରେ 'ଠକ' ଶବ୍ଦ ବ୍ୟବହୃତ ହୋଇଅଛି ଏହି ଚଉତିଶାରେ ମଧ୍ୟ ସେହି ଶବ୍ଦମାନଙ୍କର ବ୍ୟବହାର ଦେଖାଯାଏ ।

'ଟାଣ ଜଣ କହୁଥାଇ ମହାବାହୁ
 ଅଖିଳ ବ୍ରହ୍ମାଣ୍ଡେଶ୍ୱର
ଠକେ ହସିବେଟି ଏଥର ଅକୃପା
 ଦେଖିଲେ କରୁଣାବନ୍ଧୁଙ୍କର ।'

'କୋଶଳ ଚଉତିଶାରେ' ବିଦେଶରେ ଅବସ୍ଥାନ କରୁଥିବା ନାୟକ ନିକଟକୁ ତାହାର ପ୍ରେୟସୀ ସନ୍ଦେଶ ପ୍ରେରଣ କରିଥିବା ବିଷୟ ବର୍ଣ୍ଣିତ ହୋଇଅଛି । ଏକ ବିରହିଣୀର ମନୋଭାବ ଏହି କବିତାରେ ସରସ ଓ ଜୀବନ୍ତ ଭାବେ ଚିତ୍ରିତ ।

କବିଙ୍କର ପ୍ରାଥମିକ ରଚନା ଭାବେ ବାଘଗୀତ (ବାଘ ବୋଲି) ଓ ଚଢ଼େଇ ଗୀତ ଉଲ୍ଲେଖଯୋଗ୍ୟ । ସମ୍ଭବତଃ ଏହାକୁ ରଚନା କରିବା ବେଳକୁ କବି ବୈଷ୍ଣବ ଧର୍ମ ଗ୍ରହଣ କରି ନ ଥିଲେ । ବାଘ ଗୀତରୁ କବିଙ୍କର ବୀର ରସାତ୍ମକ ବର୍ଣ୍ଣନା କୁଶଳତା ଉପଲବ୍ଧ ହୁଏ । ଗ୍ରାମରେ ବାଘ ଭୟ ହେବାରୁ ଇନ୍ଦ୍ରଜିତ କପରି ଶିକାରୀମାନଙ୍କ ସହିତ ବାଘ ମାରିବାକୁ ଯାଇଥିଲେ ଓ ବାଘକୁ ଗୁଳି କରି ମାରିଥିଲେ ତାହା ଏଥିରେ ବର୍ଣ୍ଣିତ ହୋଇଅଛି । ମଧ୍ୟ ଯୁଗୀୟ ସାହିତ୍ୟ କ୍ଷେତ୍ରରେ ଏକ ବାସ୍ତବ ଘଟଣାଶ୍ରୟୀ ରଚନାଭାବେ ଏହି କ୍ଷୁଦ୍ର ଗୀତଟି ଏକ ଅନନ୍ୟ ଦୃଷ୍ଟାନ୍ତ ।

"ଶୂର ବୀରମାନେ ଅଛନ୍ତି ଟାକ
ବାହାରିଲେ ମାରୁ ଅଛନ୍ତି ଡାକ
ଯେ ଅବା ଅଯୋଗେ ଯାଏ ବଳକ
କେ ଗୁଡ଼ୁଅଛି ବାଜ ବଇଶୀକ
କେ କୁଡା କୁଟାକ, ଗୁଣ୍ଡି ଦଅନ୍ତି ଧ, ଧ, ଧ ଧ ଡାକ ।

"ଗରଜନ ଘନ ଲୋକ ଗହଳ
ରଜତ ବନ୍ଧ ଯିବାର ତ ଜଳ
ଭେକପରି ରଡ଼ି ଗ୍ରୁଡ଼େ ଚତଳ
ଦଗ୍ଧ ଶବଦ ପକ୍ଷୀ ଗହଳ
ପୃଥ୍ୱୀଟଳମଳ; ଧୂମମସ୍ତରେ ଲୁଚିଲେ ଅଚଳ ।"

ରୂପଗୋସ୍ୱାମୀଙ୍କ 'ବୈର ପଞ୍ଚଶତକା' ଅବଲମ୍ବନରେ ତାଙ୍କର 'ଗୌରଚନ୍ଦ୍ରାମଣି' କାବ୍ୟ ରଚିତ । 'ରସବତୀ', କାବ୍ୟଟି 'ଲାବଣ୍ୟବତୀ' ସଦୃଶ ଏକ କାଳ୍ପନିକ ପ୍ରଣୟ—ପ୍ରଧାନ କାବ୍ୟ । ଏତଦ୍‌ବ୍ୟତୀତ କବି 'ପ୍ରେମକଳା' 'ପ୍ରେମ ଚନ୍ଦ୍ରାମଣି' 'ପ୍ରେମ ତରଙ୍ଗିଣୀ' ଏବଂ 'ରସବତୀ' କାବ୍ୟ ରଚନା କରିଥିବା ବିଷୟ ମୃତ୍ୟୁଞ୍ଜୟ ରଥ ଓ ଜଗବନ୍ଧୁ ସିଂହ ଉଲ୍ଲେଖ କରିଯାଇଅଛନ୍ତି ।

କବି ୩୫ ବର୍ଷ ବୟସ ମଧ୍ୟରେ 'ପ୍ରେମ ଚନ୍ଦ୍ରାମଣି', 'ପ୍ରେମକଳା' ଓ 'ରସବତୀ' କାବ୍ୟ ଶେଷ କରିଥିବା ବିଷୟ ଜଣାଯାଇଅଛି ।

ତାଙ୍କର ବୈଷ୍ଣବ ଧର୍ମ ଗ୍ରହଣ ଓ କୃଷ୍ଣ ଲୀଳାତ୍ମକ କାବ୍ୟ ରଚନା ସମ୍ପର୍କରେ ଏକ କିମ୍ବଦନ୍ତୀ ପ୍ରାଚୀନ ଉତ୍କଳରେ ବର୍ଣ୍ଣିତ ହୋଇଅଛି—

"ସାମନ୍ତ ସିଂହାରଙ୍କ ସ୍ତ୍ରୀ ସତୀ, ସାଧ୍ୱୀ, ପତିବ୍ରତା ଥିଲେ ଏବଂ ପତିସେବା ଭିନ୍ନ ଅନ୍ୟ କିଛି ଜାଣି ନ ଥିଲେ । ସ୍ୱହସ୍ତରେ ରନ୍ଧନ କରିବା ଏବଂ ସ୍ୱାମୀଙ୍କୁ ଆଗେ ବସି ଭୋଜନ କରାଇ ସାରିଲେ ସେହି ଅଧରାମୃତ ପାନ କରିବା ସାମନ୍ତଙ୍କ ସ୍ତ୍ରୀଙ୍କର ପ୍ରାତ୍ୟହିକ କାର୍ଯ୍ୟ ଥିଲା । ସ୍ୱାମୀ ଭୋଜନ ନ କରିବା ପର୍ଯ୍ୟନ୍ତ ସେ ଜଳ ଗ୍ରହଣ କରୁ ନଥିଲେ । ସ୍ତ୍ରୀଙ୍କର ଏହିପରି ନିଷ୍ଠା ପତିଭକ୍ତି ଦେଖି ସାମନ୍ତ ସିଂହାର ଦିନେ କହିଲେ "ଦେଖ, ତୁମ୍ଭେ ମୋତେ ଦଣ୍ଡେ ନ ଦେଖିଲେ ବଣା ହେଉଛ, ମୁଁ ମରିଗଲେ କ'ଣ ତୁମେ ମରିଯିବ ?" ସ୍ତ୍ରୀ

ଉତ୍ତର ଦେଲେ "ମୁଁ ସବୁ ପ୍ରକୃତରେ ତୁମ୍ଭର ସ୍ତ୍ରୀ ହୋଇଥାଏ, ତେବେ ତୁମ୍ଭେ ମରିଯିବ, ମୁଁ ବଞ୍ଚିବ କପରି ?" ସାମନ୍ତ ଏ କଥା ଶୁଣି ମନକଥା ମନେ ରଖିଲେ । କେତେ ଦିନ ବିତିଗଲା । ଦିନେ ସ୍ତ୍ରୀଙ୍କ ଉକ୍ତିର ପରୀକ୍ଷା କରିବାକୁ ମନସ୍ଥ କଲେ । ଭୋଜନ ସାରି ସାମନ୍ତ ଆପଣା ଜମିଦାରୀ ବାଲିଆକୁ ଗଲେ— ସଙ୍ଗରେ ଗୋଟିଏ ପୁରାତନ ବାରିକ ଚାକରକୁ ନେଲେ । ବାଲିଆ ଓ ସାମନ୍ତଙ୍କ ନିଜ ଗ୍ରାମର ମଧ୍ୟ ରାସ୍ତାରେ ଗୋଟିଏ ଜଙ୍ଗଲ ପଡ଼େ, ସାମନ୍ତଙ୍କ ଅଣ୍ଟାରେ ସର୍ବଦା ଗୋଟିଏ କଟାରି ଥାଏ । × × × ବାଲିଆରୁ ଫେରି-ଆସିବାବେଳେ ଆପଣା ହାତର ମୁଦି, ଅଣ୍ଟାରୁ କଟାରି କାଢ଼ି ଭଣ୍ଡାରି ହାତରେ ଦେଇ କହିଲେ, "ତୁ ଯା, କାନ୍ଦ କାନ୍ଦ ଯିବୁ, ସାନ୍ତାଣୀଙ୍କୁ କହିବୁ "ସାଆନ୍ତଙ୍କୁ ବାଘ ଖାଇଗଲା ।" ଭଣ୍ଡାରି ପ୍ରଥମେ ଅସମ୍ମତ ହେଲା । କିନ୍ତୁ କଣ କରିବ, ଚାକରି କରିଛୁ, ସାଆନ୍ତଙ୍କ ଆଜ୍ଞା ପାଳନ ନ କରିବୁ କପରି ? ସୁତରାଂ ସାଆନ୍ତଙ୍କ ଆଜ୍ଞା ଅବଜ୍ଞା କରି ନ ପାରି ଅଭିନୟ ପ୍ରଦର୍ଶନ କରିବାକୁ ଗଲା । ଭଣ୍ଡାରି ଯାଇ ପହଞ୍ଚିଲାବେଳକୁ ସାଆନ୍ତାଣୀ ଚୁଲିକୁ ଧରି ଠିଆହୋଇ ସାଆନ୍ତଙ୍କ ଆଗମନକୁ ପ୍ରତୀକ୍ଷା କରୁଛନ୍ତି । ଭଣ୍ଡାରି ହାତରେ ମୁଦି ଓ କଟାରି ଏବଂ ଆଖିରେ ଲୁହ ଦେଖି କି ହେଲା, କି ହେଲା ? ପଚାରିବାରୁ ଭଣ୍ଡାରି ଅବିକଳ ନାଟକାଭିନୟ କରି ସାମନ୍ତଙ୍କ ମୃତ୍ୟୁବାର୍ତ୍ତା ଜଣାଇଲା । ସାଆନ୍ତାଣୀ ସେହିପରି ଚୁଲିକୁ ଧରି ଠିଆହୋଇ ଖବର ସତ୍ୟ କି ନା ବୋଲି ତିନି ଥର ପଚାରିଲେ । ମାତ୍ର ଦୁଷ୍ଟ ଭଣ୍ଡାରି ତିନିଥରଯାକ ଉତ୍ତର ଦେଲା 'ସତ୍ୟ', ଦେଖୁ ଏତିକି କହି ସାଆନ୍ତାଣୀ ଠିଆ ହୋଇଛନ୍ତି, ଚୁଲିର ବତାକୁ ଧରିଛନ୍ତି ଅଥଚ ଇତିମଧ୍ୟରେ 'ଜୀବାତ୍ମା ଶରୀର ପିଞ୍ଜରା ଛାଡ଼ି ଚାଲି ଗଲାଣି ।' ମୁହୂର୍ତ୍ତିକ ପରେ ସାମନ୍ତ ଆସି ପ୍ରବେଶ ହେଲେ । ସ୍ୱାମୀ ଆଗରେ ସ୍ତ୍ରୀ ଠିଆହୋଇ ରହିବା କୌଳିକ ପ୍ରଥା ନୁହେଁ ଏବଂ ସାମନ୍ତ ମଧ୍ୟ ସ୍ତ୍ରୀଙ୍କର ଏମନ୍ତ ବ୍ୟବହାର କେବେ ଦେଖି ନ ଥିଲେ । ସୁତରାଂ ସାମନ୍ତ ଯେତେ ଅଗ୍ରସର ହେଉଥାଆନ୍ତି ତାଙ୍କର କୌତୂହଳ ସେତେ ବଢ଼ୁଥାଏ । ମନେ ମନେ କରୁଥାନ୍ତି—କି ଆଶ୍ଚର୍ଯ୍ୟ ! ଏ ମତେ ଦେଖି ଘୁଞ୍ଚି-ଯାଉ ନାହାନ୍ତି, କାଠପରି ଠିଆ ହୋଇଛନ୍ତି 'କାହିଁକି ? ମୋ ଉପରେ ରୁଷ୍ଟ ହୋଇ କଣ ମାନ; ମର୍ଯ୍ୟାଦା ଭୁଲିଗଲେ ? ଅବଶେଷରେ ଅତି ନିକଟବର୍ତ୍ତୀ

ହୋଇ ସାମନ୍ତ ସ୍ତ୍ରୀଙ୍କ ହାତକୁ ଖୁଲବୁ ଓଟାଣ ବଅନ୍ତ ତ ଦେଖିଲେ ସେ ସ୍ତ୍ରୀଙ୍କର ଜୀବନ ନାହିଁ; ସ୍ତ୍ରୀ ଚଳେ ପଡ଼ିଗଲେ । ପାଠକେ, ସାମନ୍ତଙ୍କ ମନର ଅବସ୍ଥା ଏତେବେଳେ କପଣ ହୋଇଥିବ ସହଜେ ବୁଝିନେବେ । ଜ୍ଞାନକୃତ ସ୍ତ୍ରୀ ହତ୍ୟା କ ମହାପାପ ! ଆପଣା କପଟତା ଦ୍ୱାରା ଯେ ସେ ସ୍ତ୍ରୀକୁ ହରାଇ ବସିଲେ ଏ ଅନୁତାପ ସାମନ୍ତଙ୍କ ମନକୁ ଦଗ୍ଧ କରିବାକୁ ଲାଗିଲା, ହେବାର ତ କଥା । ସାମନ୍ତ ଆତ୍ମହତ୍ୟା କରିବାକୁ ସଙ୍କଳ୍ପ କଲେ । ମାତ୍ର ପରେ ମନେ ହେଲା, ଆତ୍ମହତ୍ୟା ମହାପାପ ; ସୁତରାଂ ସେ ସଙ୍କଳ୍ପ ତ୍ୟାଗକଲେ । ଅଳ୍ପଦନ ପରେ ସାମନ୍ତସିଂହାର ସାଂସାରକ ବଷୟର ଭାର ଆପଣା ପୁତ୍ର ହସ୍ତରେ ଅର୍ପଣ କର ଗୃହ ତ୍ୟାଗ କଲେ ଏବଂ ସର୍ବଦା 'ରାଧା' ରାବରେ ଉନ୍ମତ୍ତ ହେଲେ । ଯୋଗୀ ହେଲେ ବୈରାଗ୍ୟ ଜାତହୁଏ ଏବଂ ସାମନ୍ତ ବୈଷ୍ଣବ ଧର୍ମ ଗ୍ରହଣ କରିବା ପରେ ରାଧାକୃଷ୍ଣ ପ୍ରେମରେ ପ୍ରେମିକ ହୋଇ 'ବଦଗ୍ଧ ଚନ୍ତାମଣି' ଗ୍ରନ୍ଥ ପ୍ରଣୟନ କଲେ ।"

## ବଦଗ୍ଧ ଚନ୍ତାମଣି କାବ୍ୟର କଥାବସ୍ତୁ

ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତରେ କବ ୧୯ ବର୍ଷ ବୟସରେ, ଅର୍ଥାତ୍ ଖ୍ରୀ:୧୭୬୭ରେ ଏହ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇଥିଲେ । ମ.ତ୍ର ଡା: ଆର୍ତ୍ତ-ବଲ୍ଲଭ ମହାନ୍ତି ଏ ବଷୟରେ ସନ୍ଦେହ ପ୍ରକାଶ କର ଲେଖି ଅଛନ୍ତି ଯେ, "ବଦଗ୍ଧ ଚନ୍ତାମଣିର ଆଦ୍ୟଛନ୍ଦମାନ ଆଲୋଚନା କଲେ ଜଣାଯାଏ ଯେ, ତାହା ସିଦ୍ଧହସ୍ତର କୃତି । 'ସୁଲକ୍ଷଣା', 'ପ୍ରେମକଳା', 'ରସବତୀ', 'ପ୍ରେମ-ଚନ୍ତାମଣି' ପ୍ରଭୃତ କବଙ୍କର ଅନ୍ୟାନ୍ୟ ଗ୍ରନ୍ଥମାନ ପାଠକଲେ ଜଣାଯାଏ କ 'ବଦଗ୍ଧ'ର ଆଦ୍ୟଛନ୍ଦମାନଙ୍କର ରଚନା ପଦ୍ଧତ ପ୍ରୋକ୍ତ କାବ୍ୟମାନଙ୍କର ରଚନା ପଦ୍ଧତ ଅପେକ୍ଷା ଉଚ୍ଚତର କୋଟୀରେ ଅବସ୍ଥିତ । ବଶେଷତଃ ପ୍ରଥମ ଛନ୍ଦରେ ପ୍ରଦର୍ଶିତ ପାଣ୍ଡିତ୍ୟ, ଭାବମୟତ୍ୱ, ରଚନା ପାଟବ, ପ୍ରାଞ୍ଜଳଭାଷା, ଔଦାର୍ଯ୍ୟ, ଗାମ୍ଭୀର୍ଯ୍ୟାଦ ଉତ୍କୃଷ୍ଟ କାବ୍ୟ ଲକ୍ଷଣମାନ ଊନବଂଶ ବର୍ଷ ବୟସ୍କ ଯୁବକ ପକ୍ଷରେ ସୁଲଭ ବୋଲି ପ୍ରତୀୟମାନ ହୁଏନାହିଁ ।

ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ମତରେ କବିଙ୍କ ଜୀବନର ଶେଷ ୩୦ ବର୍ଷ ଏହି କାବ୍ୟ ରଚନାରେ ନିୟୋଜିତ ହୋଇଥିଲା । ତଥାପି ୧୭ ଛାନ୍ଦ ବିଶିଷ୍ଟ ଏହି କାବ୍ୟଟି ଅପୂର୍ଣ୍ଣ ରହି ଯାଇଅଛି । ଏହି କାବ୍ୟଟି କବିଙ୍କର ବହୁ ବର୍ଷର କାବ୍ୟ ସାଧନାର ଯେ ପରିଣତି ତା'ହା ସୁନିଶ୍ଚିତ । କବି ଏହି କାବ୍ୟକୁ ନିରବଚ୍ଛିନ୍ନ ଭାବେ ଲେଖି ନାହାନ୍ତି । ଏହି କାବ୍ୟର ବିଭିନ୍ନ ସ୍ଥାନରେ ବିଷୟବସ୍ତୁଗତ ପୁନରୁକ୍ତି ଓ ଅନାବଶ୍ୟକ ସ୍ଫୀତି ଦେଖିବାକୁ ମିଳିଥାଏ । ଏଥିରୁ ବହୁ ବର୍ଷର ବ୍ୟବଧାନରେ ଏହି କାବ୍ୟର ଛାନ୍ଦ ବିଶେଷ ପ୍ରଣୀତ ହୋଇଥିବା ସୁସ୍ପଷ୍ଟ । କିମ୍ବଦନ୍ତୀରୁ ମଧ୍ୟ ତାହା ହିଁ ଜଣାଯାଏ । କଥିତ ଅଛି, 'କବି ଏହି ଗ୍ରନ୍ଥ ରଚନା କଲାବେଳେ ସନ୍ଧ୍ୟାପରେ ଟଙ୍କଧର ପ୍ରଭୃତି ସଖାଗଣଙ୍କୁ ଘେନି ବସନ୍ତି ଏବଂ ଭାବି ଭାବି ଗୋଟିଏ ଗୋଟିଏ ପଦ ଡାକିଯାନ୍ତି । ଟଙ୍କଧର ବସି ପ୍ରତ୍ୟହ ତାହା ଲେଖୁଥାନ୍ତି । ସବୁଦିନ ଯେ ଏପରି ସୁବିଧା ଘଟୁଥିଲା, ତାହା ନୁହେଁ । ସୁତରାଂ ଏହିପରି ଗୋଟିଏ ଗୋଟିଏ ଛାନ୍ଦ ହୋଇ ରହିଥିଲା । ଏହାର ଛାନ୍ଦଗୁଡ଼ିକ ବିଭିନ୍ନ ସମୟରେ ରଚିତ (ଉ. ସା. ୧୮ଶ ଭାଗ 'ସୁ ସ—ପୃ: ୭୨) । ଅଭିମନ୍ୟୁ ଦୁଇଟି ଛାନ୍ଦରେ (୬ଷ ଛାନ୍ଦ ଓ ୯ଷ ଛାନ୍ଦ) ବଣିକା ନାୟିକାଙ୍କସହ ଶ୍ରୀକୃଷ୍ଣଙ୍କର ହାସ୍ୟ ପରିହାସର ବର୍ଣ୍ଣନା କରିଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ରଚନାଭାବେ ପରିଚିତ 'ବଜାର ବୋଲି'ର ନାୟକ ବିପଣୀସ୍ଥ ବିଭିନ୍ନ ବଣିକା ନାୟିକାଙ୍କସହ ଅଶ୍ଳୀଳ ପରିହାସ କଲାପରି କୃଷ୍ଣ ମଧ୍ୟ ବଣିକା ନାୟିକାମାନଙ୍କୁ ପରିହାସ କରିଅଛନ୍ତି । ଭଞ୍ଜୀୟ କାଳ୍ପନିକ କାବ୍ୟର ଆଦର୍ଶରେ କବି ରାଧା ଓ କୃଷ୍ଣଙ୍କ ମଧ୍ୟରେ ଚିଠାଉ ବିନିମୟ ମଧ୍ୟ କରାଇ ଅଛନ୍ତି । ଏହିପରି ବିଷୟବସ୍ତୁଗତ ପୁନରୁକ୍ତିର ବହୁ ଦୃଷ୍ଟାନ୍ତ ବିଦଗ୍ଧ ଚିନ୍ତାମଣିରୁ ମିଳିଥାଏ ।

ଏହି କାବ୍ୟର କଥାବସ୍ତୁ ଅତ୍ୟନ୍ତ ସଂକ୍ଷିପ୍ତ । ଏଥିରେ ଶ୍ରୀକୃଷ୍ଣଙ୍କ ଗୋପ-ବୃନ୍ଦାବନଲୀଳା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ରାଧାକୃଷ୍ଣଙ୍କର ପାରସ୍ପରିକ ଆକର୍ଷଣ, ପୂର୍ବରାଗ ଓ ସଖା ଓ ସଖୀମାନଙ୍କ ମଧ୍ୟସ୍ଥତାରେ ତାହାର ଅଭିବୃଦ୍ଧି ଓ ଉଭୟଙ୍କ ସୁତୀବ୍ର ମିଳନାକାଂକ୍ଷା, ଶେଷରେ ସୂର୍ଯ୍ୟପୂଜା ଛଳରେ ରାଧାଙ୍କ ଅଭିସାର ଓ କୃଷ୍ଣଙ୍କ ଗଳାରେ ରାଧାଙ୍କର ମାଲ୍ୟାର୍ପଣ ଓ ପରେ ରାଧାକୃଷ୍ଣଙ୍କର ମିଳନ ଓ ସମ୍ଭୋଗ ପ୍ରଭୃତି ଏହି କାବ୍ୟର ଉପଜୀବ୍ୟ ବିଷୟ ।

ଏହି କାବ୍ୟର ଗଠନଗତ ଶୃଙ୍ଖଳ ମନେହୁଏନାହିଁ । କାବ୍ୟର ପ୍ରାରମ୍ଭରେ ଚନ୍ଦ୍ରାବଳୀ କାବ୍ୟ ନାୟିକା ସ୍ୱରୂପ ବର୍ଣ୍ଣିତ ହୋଇଥିଲେହେଁ କାବ୍ୟର ଉତ୍ତରାର୍ଦ୍ଧରେ ତାହାର ଉଲ୍ଲେଖ ବା ଅବତାରଣା ଦେଖିବାକୁ ମିଳେନାହିଁ । ଏହି ପ୍ରସଙ୍ଗଟି ସଦାନନ୍ଦଙ୍କ 'ଯୁଗଳ ରସାମୃତ ଲହରୀ' କାବ୍ୟର ପ୍ରଭାବ ଭଳି ମନେହୁଏ । ଯୁଗଳରସାମୃତ ଲହରୀର ଚତୁର୍ଦ୍ଦଶଛାନ୍ଦରୁ ଷୋଡ଼ଶ ଛାନ୍ଦ ମଧ୍ୟରେ ଚନ୍ଦ୍ରାବଳୀ ଓ କୃଷ୍ଣଙ୍କର ପ୍ରଣୟ ବିଷୟ ବର୍ଣ୍ଣିତ ହୋଇଅଛି ଓ ସପ୍ତଦଶ ଛାନ୍ଦରୁ ଅବଶିଷ୍ଟ ଛାନ୍ଦମାନଙ୍କରେ ରାଧାକୃଷ୍ଣଙ୍କର ପ୍ରଣୟଲୀଳା ବର୍ଣ୍ଣିତ ହୋଇଅଛି । ଏହିଭଳି ବିଦଗ୍ଧ ଚିନ୍ତାମଣିରେ ପ୍ରଥମରୁ ଚନ୍ଦ୍ରାବଳୀ ଓ କୃଷ୍ଣଙ୍କ ପ୍ରେମ ଲୀଳା ବର୍ଣ୍ଣନା ପରେ ରାଧା ଓ କୃଷ୍ଣଙ୍କ ପ୍ରେମଲୀଳାର ବର୍ଣ୍ଣନା ଦେଖାଯାଏ । ସଦାନନ୍ଦଙ୍କ 'ଯୁଗଳ ରସାମୃତ ଲହରୀ' ଭଳି ବିଦଗ୍ଧ ଚିନ୍ତାମଣିରେ ରାଧାକୃଷ୍ଣ ଓ ଚନ୍ଦ୍ରାବଳୀଙ୍କ ମଧ୍ୟରେ ଚଟାଉ ବନମୟ ବିଷୟ ବର୍ଣ୍ଣିତ ହୋଇଅଛି ।

କବି ଏହି କାବ୍ୟକୁ କିପରି ପରିସମାପ୍ତ କରିଥାଆନ୍ତେ ତାହା କଳ୍ପନା କରିବା ଦୁରୁହ । କେହି କେହି କୁହନ୍ତି ରାଧାକୃଷ୍ଣ ପ୍ରେମଲୀଳାର ଶେଷ ନାହିଁ । ତେଣୁ କବି ଏହାକୁ ଇଚ୍ଛାକରି ଶେଷକରି ନାହାନ୍ତି । ମାତ୍ର ଏହା ସମୀଚୀନ ମନେହୁଏ ନାହିଁ । ଯାହା ହେଉ କାବ୍ୟଟି ଅସମ୍ପୂର୍ଣ୍ଣ ଥିବା ଅବସ୍ଥାରେ କବିଙ୍କ ଅକାଳ ବିୟୋଗ ଘଟିଥିଲା । ଶୁଣାଯାଏ ୧୬ଟି ଛାନ୍ଦରେ କବି ଏହାକୁ ସମ୍ପୂର୍ଣ୍ଣ କରିବାକୁ ଇଚ୍ଛା କରିଥିଲେ । ଏଣୁ ଏହାକୁ ଏକ ଅସମ୍ପୂର୍ଣ୍ଣ ମହାକାବ୍ୟ କୁହାଯାଇପାରେ ।

ନାମ କରଣର ତାତ୍ପର୍ଯ୍ୟ—

ରୂପ ଗୋସ୍ୱାମୀଙ୍କ ରଚିତ ସଂସ୍କୃତ ନାଟକ 'ବିଦଗ୍ଧ ମାଧବ'ର ନାମ ଅନୁକରଣରେ ବିଦଗ୍ଧ ଚିନ୍ତାମଣି ପରିକଳ୍ପିତ ହୋଇଥିବା ଅନୁମିତ ହୁଏ । ବିଦଗ୍ଧ ମାଧବର କେତେକ ବିଷୟବସ୍ତୁ ମଧ୍ୟ କବି ଅବଲମ୍ବନ କରି ଏହି କାବ୍ୟ ରଚନା କରିଅଛନ୍ତି । 'ବିଦଗ୍ଧ ମାଧବ' ନାଟକଟି ଗୀତାକାରରେ ବଙ୍ଗ କବି ଯଦୁ ନନ୍ଦନ ଦାସଙ୍କ ଦ୍ୱାରା ଅନୂଦିତ ହୋଇଥିଲା । ସଦାନନ୍ଦ

କବିସୂର୍ଯ୍ୟ ବ୍ରହ୍ମା ସେହି ବଙ୍ଗଳା ଅନୁବାଦକୁ ଛବି କରି ୫୮ଟି ଛନ୍ଦ ବିଶିଷ୍ଟ 'ବ୍ରଜ ଲୀଳାମୃତ ସମୁଦ୍ର' ରଚନା କରିଥିଲେ । ଅଭିମନ୍ୟୁ 'ବ୍ରଜ-ଲୀଳାମୃତ ସମୁଦ୍ର' ପାଠ କରିଥିବା ମଧ୍ୟ ସମ୍ଭବପର । କବିସୂର୍ଯ୍ୟ ସଦାନନ୍ଦ ମଧ୍ୟ କୃଷ୍ଣ ଲୀଳାତ୍ମକ 'ସୌର ଚିନ୍ତାମଣି', 'ନାମ ଚିନ୍ତାମଣି' କାବ୍ୟ ଓ 'ପ୍ରୀତି ଚିନ୍ତାମଣି' ଚଉତିଶା ରଚନା କରିଥିଲେ । ସୌର ଚିନ୍ତାମଣି କାବ୍ୟରେ ସେ କୃଷ୍ଣଙ୍କୁ ଚିନ୍ତାମଣି ନାମରେ ଅଭିହିତ କରିଅଛନ୍ତି । ଦ୍ୱାଦଶ ଛାନ୍ଦ ବିଶିଷ୍ଟ 'ନାମ ଚିନ୍ତାମଣି' କାବ୍ୟରେ ସେ କୃଷ୍ଣଙ୍କ ନାମକୁ ଚିନ୍ତାମଣି ବୋଲି ଗ୍ରହଣ କରିଅଛନ୍ତି । ଏହିପରିଭାବେ କୃଷ୍ଣଙ୍କୁ ଚିନ୍ତାମଣି ଭାବରେ ଅଭିହିତ କରିବାରେ ଅଭିମନ୍ୟୁ ସ୍ୱୀୟ ଗୁରୁଙ୍କ ପଦାଙ୍କ ଅନୁସରଣ କରିଅଛନ୍ତି । କବି ଉପାସ୍ୟ ଦେବତାଙ୍କୁ ସମ୍ବୋଧନ କରି ଲେଖିଥିଲେ —

'କାମନା କଳପତରୁ ଚିନ୍ତାମଣି ନାମ
କଳ୍ପିଛି କବିତ୍ୱେ ବର୍ଣ୍ଣିବାକୁ ତବ ପ୍ରେମ ହେ ।'
(ପ୍ରଥମ ଛାନ୍ଦ)

କବିମାନେ ଉପାସ୍ୟ ଦେବତାଙ୍କ ମହିମା ଓ ଗୁଣାବଳୀକୁ ବର୍ଣ୍ଣନା କରି କାବ୍ୟ ରଚନା କରିଥାଆନ୍ତି । ନାୟକର ଗୁଣ ଓ ଅବସ୍ଥା ଭେଦରେ କାବ୍ୟ ଓ କାବ୍ୟର ସର୍ଗର ମଧ୍ୟ ନାମକରଣ କରିଥାଆନ୍ତି । ଗୀତ ଗୋବିନ୍ଦରେ କୃଷ୍ଣଙ୍କର ଅବସ୍ଥା ଅନୁଯାୟୀ ବିଭିନ୍ନ ସର୍ଗ, 'ସୁପ୍ରୀତ ପୀତାମ୍ବର', 'ମୁଗ୍ଧ ମାଧବ', 'ମୁଗ୍ଧ ମଧୁସୂଦନ', ମୁଗ୍ଧ ମୁକୁନ୍ଦ, ସାନନ୍ଦ ଗୋବିନ୍ଦ ପ୍ରଭୃତି ନାମରେ ନାମିତ ହୋଇଅଛି ।

ଶ୍ରୀକୃଷ୍ଣ ଚିନ୍ତାକୁ ଦୂର କରୁଥିବାରୁ ଓ ଅଭୀଷ୍ଟ ପୂରଣ କରୁଥିବାରୁ ତାଙ୍କୁ 'ଚିନ୍ତାମଣି' ନାମରେ ଅଭିହିତ କରାଯାଇଥାଏ । କବିମଧ୍ୟ ତାଙ୍କୁ ଚିନ୍ତାମଣି ନାମରେ ବହୁ ସ୍ଥାନରେ ଉଲ୍ଲେଖ କରିଅଛନ୍ତି ।

ଅତଏବ ଶୁଣିଛୁ ଏହି ସ୍ଥାନ ଚିନ୍ତାମଣି
ଆତୁର ହୋଇ କାହିଁକି ହୁଅ ଚିନ୍ତାମଣି । ୭ । ୧୮ ।

ଗୌଡ଼ୀୟ ଭକ୍ତମାନଙ୍କ ଦୃଷ୍ଟିରେ କୃଷ୍ଣ ରସିକ ଓ କଳା-ବିଳାସରେ ପ୍ରବୀଣ । କଳା-ବିଳାସରେ ପ୍ରବୀଣ ବ୍ୟକ୍ତିଙ୍କୁ ରୂପ ଗୋସ୍ୱାମୀଙ୍କ ରଚିତ ଭକ୍ତିରସାମୃତ ସିନ୍ଧୁରେ 'ବିଦଗ୍ଧ' ନାମରେ ଅଭିହିତ କରାଯାଇଅଛି--

'କଳାବିଳାସ ଦଗ୍ଧାତ୍ମା ବିଦଗ୍ଧ ଇତି କୀର୍ତ୍ତ୍ୟତେ ।'

କବି ଅଭିମନ୍ୟୁ ମଧ୍ୟ ଚିନ୍ତାମଣି ବା କୃଷ୍ଣଙ୍କୁ କଳାବିଳାସ ନିପୁଣ ଭାବରେ ଏହି କାବ୍ୟରେ ଚିତ୍ରଣ କରିଅଛନ୍ତି । ପ୍ରେମ ଲୀଳାରେ ସୁଚତୁର କୃଷ୍ଣ ଏହି କାବ୍ୟର ନାୟକ ହୋଇଥିବାରୁ ନାୟକଙ୍କ ଗୁଣାନୁକ୍ରମେ ଏହାର ନାମ ବିଦଗ୍ଧ ଚିନ୍ତାମଣି ରଖାଯାଇଥିବା ସମ୍ଭବପର । ଏହି କାବ୍ୟ ବିଦଗ୍ଧ ବା ପଣ୍ଡିତମାନଙ୍କୁ ପରିତୃପ୍ତ କରିବାରେ ଚିନ୍ତାମଣି ସ୍ୱରୂପ । ଏହି ଭାବରେ ମଧ୍ୟ ଏହାର ନାମକରଣ ହୋଇଥିବା ସମ୍ଭବପର । ଚିନ୍ତାମଣି ନାମକ ଦୁର୍ଲ୍ଲଭ ମଣିକୁ ଲାଭକଲେ ଲୋକର ସମସ୍ତ ବାସନା, କାମନା ଚରିତାର୍ଥ ହୋଇଥାଏ । ସେହିପରି ଏହି କାବ୍ୟ ଉତ୍ତମ କାବ୍ୟର ସର୍ବବିଧ ଉପାଦାନରେ ପରିପୂର୍ଣ୍ଣ ହୋଇଥିବା ଯୋଗୁଁ ତାହା କାବ୍ୟ ରସିକ ବା ପଣ୍ଡିତ ବ୍ୟକ୍ତିମାନଙ୍କୁ ପରିତୃପ୍ତ କରିବାକୁ ସମର୍ଥ । ଏଥିରେ ବିବିଧ ରସ, ବିବିଧ ଅଳଙ୍କାର ପ୍ରସାଦ ମାଧୁର୍ଯ୍ୟାଦି ବିବିଧ ଗୁଣ, ଉନ୍ନତ ଭାବନା ସନ୍ନିବିଷ୍ଟ ହୋଇଥିବାରୁ ଏହା କାବ୍ୟାନୁରାଗୀମାନଙ୍କ ପକ୍ଷେ ଆନନ୍ଦପ୍ରଦ ହେବ ବୋଲି କବି କାମନା କରିବା ମଧ୍ୟ ସ୍ୱାଭାବିକ । ଗୁଣଗ୍ରାହୀ ବିଶେଷତଃ ପ୍ରେମଭକ୍ତି ପରାୟଣ ପାଠକମାନେ ଏହି କାବ୍ୟରୁ ପ୍ରେମ-ଭକ୍ତିତତ୍ତ୍ୱ ବିଷୟରେ ଅବହିତ ହୋଇପାରିବେ ବୋଲି କବି ସ୍ୱୀକାର କରିଅଛନ୍ତି—

'ଗୁଣ ଗ୍ରାହକେ ପାଇବେ ଚିନ୍ତୁନ୍ତ ସୁପ୍ରେମ
ଗୀତ ହେବ ବିଦଗ୍ଧ ଚିନ୍ତାମଣି ନାମ ।'

(୧ମ ଛାନ୍ଦ)

ଶ୍ରୀ ଗୌରୀକୁମାର ବ୍ରହ୍ମା 'ବିଦଗ୍ଧ ଚିନ୍ତାମଣି'ର ଅନ୍ୟାନ୍ୟ ନାମକରଣ ସମ୍ପର୍କରେ ଆଲୋଚନା କରି ଲେଖିଅଛନ୍ତି, ''ଶବ୍ଦ—କସରତ୍ ପ୍ରିୟ

ଛାତ୍ରାର୍ଥୀମାନେ 'ବିଦଗ୍ଧ-ଚିନ୍ତାମଣି' ଶବ୍ଦଟିର ନାନା ଅର୍ଥ ପ୍ରକାଶ କରିବାକୁ ଚେଷ୍ଟା କରନ୍ତି । ତନ୍ମଧ୍ୟରୁ ଗୋଟିଏ ହେଉଛି—ଏ ଗ୍ରନ୍ଥ ବିଦଗ୍ଧ ବା ପଣ୍ଡିତମାନଙ୍କର ଚିନ୍ତାର ମଣି ବା ରତ୍ନ ସ୍ୱରୂପ—ଏଥିରେ ପଣ୍ଡିତଙ୍କ ଶ୍ରେଷ୍ଠ ଚିନ୍ତା ପ୍ରକାଶ ପାଇଛି । ଆଉ ଗୋଟିଏ—ବିଦଗ୍ଧ ବା ବିରହରେ ଦଗ୍ଧୀଭୂତ ଯେଉଁ ଚିନ୍ତା ବା ଶ୍ରୀକୃଷ୍ଣଙ୍କ ରାଧା ପ୍ରେମର ଭାବନା, ତାହାର ମଣି ସ୍ୱରୂପ । ମାତ୍ର ଏଗୁଡ଼ିକ ବ୍ୟାଖ୍ୟାନ କରିବା ଦ୍ୱାରା କବିଙ୍କ ମହତ୍ତ୍ୱ ବୃଦ୍ଧି ପାଉଛି ବୋଲି ମନେହୁଏନାହିଁ ।''

(ଅଭିମନ୍ୟୁ ସାମନ୍ତ ସିଂହାର—ପୃ: ୧୯)

ଚରିତ୍ର ଚିତ୍ରଣ—

## ଶ୍ରୀକୃଷ୍ଣ

ବିଦଗ୍ଧ ଚିନ୍ତାମଣିରେ ନାୟକ-ନାୟିକାଙ୍କ ବ୍ୟତୀତ ସଖା-ସଖୀ ପ୍ରଭୃତି ବହୁ ଚରିତ୍ରର ସମାବେଶ ଦେଖାଯାଏ । ଶ୍ରୀକୃଷ୍ଣ ଓ ରାଧା ହିଁ ଯଥାକ୍ରମେ ଏହି କାବ୍ୟର ନାୟକ ନାୟିକା । ଅଳଙ୍କାର ଶାସ୍ତ୍ରରେ ଧୀର ଲଳିତ, ଧୀର ଶାନ୍ତ, ଧୀରୋଦ୍ଧତ ଏବଂ ଧୀରୋଦାତ୍ତ ପ୍ରଭୃତି ଚତୁର୍ବିଧ ନାୟକର ଉଲ୍ଲେଖ ଦେଖାଯାଏ । ଶ୍ରୀକୃଷ୍ଣ ଧୀର ଲଳିତ ନାୟକ ଭାବେ ପରିଗଣିତ ହୁଅନ୍ତି । ମାତ୍ର ବୈଷ୍ଣବ ଭକ୍ତମାନଙ୍କ ମତରେ ତାହାଙ୍କ ଠାରେ ଚତୁର୍ବିଧ ନାୟକର ସମସ୍ତ ଗୁଣ ବିଦ୍ୟମାନ । ଧୀର ଲଳିତ ନାୟକ ଭାବେ ଶ୍ରୀକୃଷ୍ଣ ବିଦଗ୍ଧ, ନବ ଯୁବା, ପରିହାସ ବିଶାରଦ, ନିଶ୍ଚିନ୍ତ ଓ ପ୍ରେୟସୀ ବଶୀଭୂତ ପ୍ରଭୃତି ଗୁଣସମ୍ପନ୍ନ ।

ଦେବତାମାନଙ୍କ ଅନୁରୋଧରେ କଂସର ଦୌରାତ୍ମ୍ୟରୁ ପୃଥିବୀକୁ ଉଦ୍ଧାର କରିବା ପାଇଁ କୃଷ୍ଣଙ୍କର ଆବିର୍ଭାବ । ତାହାଙ୍କର ଜନ୍ମ ଓ ଶୈଶବକାଳୀନ କାର୍ଯ୍ୟକଳାପକୁ କବି ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣି କାବ୍ୟରେ ଅତ୍ୟନ୍ତ ସଂକ୍ଷେପରେ ବର୍ଣ୍ଣନା କରିଅଛନ୍ତି (୨ୟ ଛାନ୍ଦ) । ତତ୍ପରେ କୃଷ୍ଣଙ୍କର କୈଶୋର-କାଳୀନ କାର୍ଯ୍ୟାବଳୀ ବର୍ଣ୍ଣିତ ହୋଇଅଛି । କୃଷ୍ଣ ତାହାଙ୍କ ସଖା ମଧୁମଙ୍ଗଳ ଓ ପୌର୍ଣ୍ଣମାସୀଙ୍କ ଠାରୁ ରାଧାଙ୍କ ନାମ ଶ୍ରବଣ କରି ବ୍ୟାକୁଳିତ ହୋଇ ଅଛନ୍ତି

(୫ମ, ୬ଷ୍ଠ ଓ ନବମ ଛାନ୍ଦ) ଓ ରାଧାଙ୍କ ସହିତ ମିଳିତ ହେବା ଲାଗି ତାହାଙ୍କ ନିକଟକୁ ଦୂତୀ ପ୍ରେରଣ କରି ଅଛନ୍ତି । ଇତ୍ୟବସରରେ କୃଷ୍ଣ, ପୌର୍ଣ୍ଣମାସୀଙ୍କ ପରାମର୍ଶକ୍ରମେ ଗୋ-ଶାସ୍ତ୍ର ଅଧ୍ୟୟନ କରିବା ଲାଗି ଗୋବର୍ଦ୍ଧନ ମଲ୍ଲ ଗୃହକୁ ଯାଇ ଅଛନ୍ତି । ଗୋବର୍ଦ୍ଧନଙ୍କ ନିର୍ଦ୍ଦେଶରେ ତାହାର ପତ୍ନୀ ଚନ୍ଦ୍ରାବଳୀ କୃଷ୍ଣଙ୍କୁ ବନ୍ଦାପନା କଲାବେଳେ କୃଷ୍ଣ ଚନ୍ଦ୍ରାବଳୀର ରୂପ ଶୋଭାରେ ବିମୋହିତ ହୋଇ ପଡ଼ିଛନ୍ତି । ଗୋବର୍ଦ୍ଧନଙ୍କ ଗୃହରୁ ଫେରି କୃଷ୍ଣ ଚନ୍ଦ୍ରାବଳୀର ବିରହରେ ଅତ୍ୟନ୍ତ ବ୍ୟଥିତ ହୋଇ ତାହା ନିକଟକୁ ଚଟାଉ ବା ପ୍ରେମପତ୍ର ପ୍ରେରଣ କରିଅଛନ୍ତି (୧୪ଶ ଓ ୧୫ଶ ଛାନ୍ଦ) । ଚନ୍ଦ୍ରାବଳୀ ମଧ୍ୟ କୃଷ୍ଣଙ୍କ ନିକଟକୁ ସମ୍ମତିସୂଚକ ପ୍ରତ୍ୟୁତ୍ତର ପଠାଇଅଛନ୍ତି । ତାହାପରେ ଉଭୟଙ୍କର ମିଳନ ହୋଇଅଛି । ବ୍ରହ୍ମା ପ୍ରରଣ କରାଇଦେବାରୁ ବିରହ ବିଧୁର କୃଷ୍ଣ ବଟୁଙ୍କ ପ୍ରାର୍ଥନା କରି ବଂଶୀଲାଭ କଲେ (ସପ୍ତଦଶ ଛାନ୍ଦ) ଓ ଗୋପୀମାନଙ୍କ ସହିତ ଜଳକ୍ରୀଡ଼ା କାଳରେ ବସ୍ତ୍ର ହରଣ କରିଥିଲେ । ଦୂତୀଠାରୁ ରାଧାଙ୍କର ଅପୂର୍ବ ରୂପଗୁଣର ପ୍ରଶଂସା ଓ ତାହାଙ୍କ ବିରହାବସ୍ଥା ବିଷୟ ଶୁଣିବାକୁ ପାଇ କୃଷ୍ଣ ରାଧାଙ୍କ ସହ ମିଳିତ ହେବାଲାଗି ଅଭିଳାଷୀ ହୋଇ-ଅଛନ୍ତି । ଏକ କାର୍ତ୍ତିକ ପୂର୍ଣ୍ଣିମା ନିଶିର ଶେଷ ଯାମରେ ଯୋଗମାୟା କୃଷ୍ଣଙ୍କୁ ମାୟାରେ ନେଇ ବିରହିଣୀ ରାଧାଙ୍କ ଶୟନସ୍ଥାନରେ ଛାଡ଼ି ଦେଇଅଛନ୍ତି । କୃଷ୍ଣ ରାଧାଙ୍କର ନିଦ୍ରାବସ୍ଥାର ଅପରୂପ ସୌନ୍ଦର୍ଯ୍ୟ ଅବଲୋକନ କରି ବିମୁଗ୍ଧ— କୃଷ୍ଣଙ୍କର ହସ୍ତସ୍ପର୍ଶ ଲାଭ କରି ରାଧାଙ୍କର ନିଦ୍ରାଭଙ୍ଗ ହେଲା । କୃଷ୍ଣ ରାଧାଙ୍କ ନିକଟରେ ଆପଣାର ବିନୟୋକ୍ତି ପ୍ରକାଶ କରି ତାହାଙ୍କୁ ଆଲିଙ୍ଗନପୂର୍ବକ ପଲଙ୍କରେ ଉପବେଶନ କଲେ । ମାତ୍ର ଏହି ସମୟରେ ଯୋଗମାୟା ମାୟା-ବଳରେ କୃଷ୍ଣଙ୍କୁ ଅପସାରିତ କରି ତାହାଙ୍କୁ ସ୍ୱ ଗୃହରେ ଛାଡ଼ି ଆସିଲେ (୩୦ ଛାନ୍ଦ) । ଏହାପରେ କୃଷ୍ଣ ବିଳାପ କରିଅଛନ୍ତି ଓ ତାହାଙ୍କ ମିତ୍ରମାନେ ତାହାଙ୍କୁ ସାନ୍ତ୍ୱନା ଦେଇଅଛନ୍ତି (୩୩, ୩୪, ୩୫ ଓ ୩୬ଶ ଛାନ୍ଦ) ।

ସଖା ମଧୁମଙ୍ଗଳ ପ୍ରୀତିର ମହାତ୍ମ୍ୟ ସମ୍ପର୍କରେ କୃଷ୍ଣଙ୍କୁ ବୁଝାଇଛନ୍ତି ଓ କୃଷ୍ଣ ରାଧା-ପ୍ରୀତି-ଭାବନାରେ ଅଧିକ ତନ୍ମୟ ହୋଇପଡ଼ିଛନ୍ତି (୪୨ଶ ୪୩ଶ ଛାନ୍ଦ) । ଆଉଦିନେ ସଖି-ପରିବୃତ୍ତା ରାଧାଙ୍କୁ କାନନଟରେ ଦେଖି କୃଷ୍ଣ ତାହାଙ୍କ

ମାନସିକ ପ୍ରତିକ୍ରିୟାକୁ ସଖୀମାନଙ୍କ ନିକଟରେ ପ୍ରକାଶ କରିଛନ୍ତି । ଦୂରଠାରୁ ରାଧିକାଙ୍କର ଉଦ୍ଦେଶ୍ୟ ପାଇ କୃଷ୍ଣ ରାଧାଙ୍କ ନିକଟକୁ ଚାହାଁଇ ଦେଖିଛନ୍ତି । ରାଧା କାମୀବନ ନାମକ ସଙ୍କେତ ସ୍ଥଳରେ କୃଷ୍ଣଙ୍କ ସହ ମିଳିତ ହେବେ ବୋଲି ଜଣାଇଥିବାରୁ କୃଷ୍ଣ ସେହି ସଙ୍କେତ ସ୍ଥଳକୁ ଯାଇଛନ୍ତି ଓ ଅଧୀର ଆଗ୍ରହ ଓ ପ୍ରଚଣ୍ଡ ଉତ୍କଣ୍ଠା ସହ ରାଧାଙ୍କର ପ୍ରତୀକ୍ଷା କରିଛନ୍ତି । ସେହି ସଙ୍କେତ କୁଞ୍ଜରେ ରାଧାକୃଷ୍ଣଙ୍କର ସାକ୍ଷାତ୍ ହେଲା । ମାତ୍ର ଏହାର ଅବ୍ୟବହିତ ପରେ ସେ ସ୍ଥାନକୁ ଜଟିଳାର ଆଗମନ ବାର୍ତ୍ତା କକ୍ଖଟୀ ନାମକ ଏକ ବୃଦ୍ଧା ବାନରୀ ଠାରୁ ଶୁଣିବାକୁ ପାଇ କୃଷ୍ଣ ଗୋପନରେ ପଳାଇଯାଇ ଅଛନ୍ତି ଓ କିଛିକ୍ଷଣପରେ ଦେବପୂଜକ ବଟୁ ବେଶରେ ସେଠାରେ ଉପସ୍ଥିତ ହୋଇ ଜଟିଳାଙ୍କୁ ପ୍ରତାରିତ କରି ଅଛନ୍ତି ଓ ରାଧାଙ୍କ ସୂର୍ଯ୍ୟ ପୂଜା ସମ୍ପାଦନ କରିଅଛନ୍ତି ।

କୃଷ୍ଣଙ୍କର ସ୍ୱନକ୍ଷତ୍ର ପାଳନ ଦିବସ ଆସି ଉପସ୍ଥିତ ହେଲା । କୃଷ୍ଣଙ୍କ ଦେହ ଦୁର୍ବଳ ହୋଇଥିବା ଦେଖି ପୌର୍ଣ୍ଣମାସୀଙ୍କ ପରାମର୍ଶକ୍ରମେ ଯଶୋଦା ରାଧାଙ୍କୁ ସ୍ୱ ଗୃହକୁ ଆଣି ରାଧାଙ୍କ ଦ୍ୱାରା ଖାଦ୍ୟ-ସାମଗ୍ରୀ ପ୍ରସ୍ତୁତ କରାଇବା ଲାଗି ସ୍ଥିର କଲେ । ମର୍ଯ୍ୟାଦା ସହକାରେ ରାଧା ଯଶୋଦାଙ୍କ ଗୃହରେ ଉପସ୍ଥିତ ହୋଇ ସ୍ୱହସ୍ତରେ ବିଭିନ୍ନ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କଲେ । ତାହାକୁ କୃଷ୍ଣ ଓ ସଖାବର୍ଗ ତୁଷ୍ଟ ଚିତ୍ତରେ ଭୋଜନ କଲେ (୬ଷ୍ଠ ଗ୍ରନ୍ଥ) । କୃଷ୍ଣ ପ୍ରଭାତରୁ ସଖାମାନଙ୍କ ସହ ଗୋଚାରଣ ଲାଗି ବନକୁ ଯାଉଥିଲେ । ବିପଣୀ ମଧ୍ୟରେ ଯାଉଥିବାବେଳେ ସେ ତାମ୍ବୁଳୀ, ପାଟସୁଣୀ, କଂସାରୁଣୀ, କାଚଗୁଣୀ ଓ କଇବର୍ତ୍ତୀ ପ୍ରଭୃତି ନାରୀମାନଙ୍କ ସହ ପରିହାସ କରୁଥିଲେ (୭ମ ଗ୍ରନ୍ଥ) । କୃଷ୍ଣ ବନରେ ସଖାମାନଙ୍କ ସହ ପରିହାସ ଓ ଗୋଦୋହନରେ କାଳ ଅତିବାହିତ କରୁଥିଲେ ହେଁ ରାଧାଙ୍କ ସହ ମିଳନ ଭାବନାକୁ ମନରୁ ଦୂର କରି ପାରି ନଥିଲେ । ଗୋଧୂଳି ସମୟରେ ସେ ଗୋଷ୍ଠରୁ ବାହୁଡ଼ା-ବିଜୟ କରନ୍ତି (୮ମ ଗ୍ରନ୍ଥ) ଓ ଚନ୍ଦ୍ରକିରଣରେ ସଖାମାନଙ୍କ ନିକଟରେ ରାଧା ଅପ୍ରାପ୍ତି ଜନିତ ଦୁଃଖ ବିଷୟ ବର୍ଣ୍ଣନା କରନ୍ତି । ପରେ ବସନ୍ତ କାଳରେ ବୃନ୍ଦାବନରେ କୃଷ୍ଣ ସଖାମାନଙ୍କ ନିକଟରେ ରାଧାଙ୍କ ପ୍ରୀତି ପ୍ରାପ୍ତି ବିଷୟକ ଭାବନାକୁ ଅତ୍ୟନ୍ତ ଦୁଃଖରେ ବର୍ଣ୍ଣନା କରୁଥିଲେ । ଏହି

ସମୟରେ ଦୂତିକାଙ୍କ ସଙ୍ଗେ ତାଙ୍କର ସାକ୍ଷାତ୍ ହୋଇଥିଲା । ଦୂତୀ ରାଧାଙ୍କ ସହ କୃଷ୍ଣଙ୍କୁ ଶୀଘ୍ର ମିଳିତ କରାଇଦେବାର ଆଶା ଦେଇ ତାହାଙ୍କୁ ଆଶ୍ୱସ୍ତ କରିଥିଲା (୭୨ଶ ଛାନ୍ଦ) ।

ଦିନେ ଶିବ ପୂଜା କରିବାକୁ ଆସିଥିବା ରାଧାଙ୍କ ସହ ବ୍ରାହ୍ମଣ ପୂଜକ ବେଶ ଧାରଣ କରିଥିବା କୃଷ୍ଣଙ୍କର ସାକ୍ଷାତ୍ ହୋଇଥିଲା । ମାତ୍ର ଏହି ସମୟରେ ହଠାତ୍ ବୃନ୍ଦା ଶାଶୁ ମୁଖରାର ଉପସ୍ଥିତି ଯୋଗୁଁ ଉଭୟଙ୍କ ମଧ୍ୟରେ ମିଳନ ସଂଘଟିତ ହୋଇ ପାରିଲା ନାହିଁ । ପୁନଶ୍ଚ ରାଧାଙ୍କ ସହ ତାହାଙ୍କୁ ମିଳିତ କରାଇଦେବାକୁ ସେ ଦୂତୀ କର ଧରି ବହୁ ଅନୁରୋଧ କରି ଅଛନ୍ତି (୭୪ଶ ଛାନ୍ଦ) । ଏଣୁ ଦୂତୀ ରାଧାଙ୍କ ନିକଟକୁ ଯାଇଛନ୍ତି ଓ ତାହାଙ୍କଠାରୁ ମିଳନୋତ୍କଣ୍ଠାପୂର୍ଣ୍ଣ ବାଚିକ ସନ୍ଦେଶ ନେଇ କୃଷ୍ଣଙ୍କୁ ଜଣାଇ ଅଛନ୍ତି (୭୬ଶ ଛାନ୍ଦ) । କୃଷ୍ଣ ସଖାମାନଙ୍କ ନିକଟରେ ତାହାଙ୍କର ରାଧା-ବିରହ ଦୁଃଖ ପ୍ରକାଶ କରିବାରୁ ମଧୁମଙ୍ଗଳ କୃଷ୍ଣଙ୍କୁ ସଙ୍କେତ କୁଞ୍ଜରେ ଅପେକ୍ଷା କରିବାକୁ କହି ନିଜେ ରାଧାଙ୍କ ନିକଟକୁ ଯାଇ ଅଛନ୍ତି (୭୮ଶ ଛାନ୍ଦ) । ଶ୍ରୀକୃଷ୍ଣ ରାଧାଙ୍କ ପ୍ରତୀକ୍ଷାରେ ସଙ୍କେତ କୁଞ୍ଜରେ ବସି ଚନ୍ଦ୍ର ଓ କନ୍ଦର୍ପଙ୍କୁ ନିନ୍ଦା କରୁଥାଆନ୍ତି (୭୯ଶ ଛାନ୍ଦ) । ଇତ୍ୟବସରରେ ସଖୀ ବୃନ୍ଦା ସେଠାରେ ଉପସ୍ଥିତ । ସେ ମଧ୍ୟ କୃଷ୍ଣଙ୍କୁ ସାନ୍ତ୍ୱନା ଦେଇ ରାଧାଙ୍କୁ ସେଠାକୁ ଆଣିବା ଲାଗି ରାଧାଙ୍କ ଭବନକୁ ଯାଇଅଛି । ରାଧା ଅଭିସାରିକା ବେଶରେ ସଜ୍ଜିତା ହୋଇ କୁଞ୍ଜରେ ଉପସ୍ଥିତ ହେଲେ । ଉଭୟଙ୍କ ସାକ୍ଷାତ ହେଲା, କୃଷ୍ଣ ଉତ୍କଣ୍ଠାପୂର୍ବକ ତାହାଙ୍କ ସହିତ ମିଳିତ ହୋଇଅଛନ୍ତି (୮୨, ୮୩ଶ ଛାନ୍ଦ) । ନିଶାନ୍ତ ପୂର୍ବରୁ କୃଷ୍ଣ କୁଞ୍ଜ ଭବନ ତ୍ୟାଗକରି ନିଜ ଗୃହରେ ଉପସ୍ଥିତ ହୋଇଛନ୍ତି ଓ ମଥା ସ୍ଥାନରେ ଶୟନ କରି ଅଛନ୍ତି । ତାହାଙ୍କର ନିଦ ଭାଙ୍ଗିବାରେ ବିଳମ୍ବ ହେବାରୁ ଯଶୋଦା ତାହାଙ୍କୁ ଜାଗ୍ରତ କରାଇଛନ୍ତି (୮୬ଶ ଛାନ୍ଦ) । କୃଷ୍ଣଙ୍କୁ ଦେଖି ସଖାମାନେ ପରିହାସ କରିଛନ୍ତି (୮୭ଶ ଛାନ୍ଦ) ଓ କୃଷ୍ଣ ସଖାମାନଙ୍କୁ ଗତ ରାତ୍ରିର ମିଛ ବୃତ୍ତାନ୍ତ ଶୁଣାଇଅଛନ୍ତି (୮୮ଶ ଛାନ୍ଦ) । କୃଷ୍ଣ ରାଧାଙ୍କ ସହ କୈବର୍ତ୍ତ ବା ଘାଟିଆ ପ୍ରଭୃତି ବିବିଧ ବେଶରେ ମଧ୍ୟ କେଳି କରିଥିଲେ (୮୯ଶ ଛାନ୍ଦ) । ଏହିପରି ବିଦଗ୍ଧ ଭାବରେ ହିଁ କୃଷ୍ଣଙ୍କ ଚରିତ କାବ୍ୟରେ ଚିତ୍ରିତ ହୋଇଅଛି ।

## ରାଧା

ବୈଷ୍ଣବ ତତ୍ତ୍ୱଗ୍ରନ୍ଥାନୁସାରୀ ରାଧା ମହାଭାବ ସ୍ୱରୂପିଣୀ । ପ୍ରେମ ଆରାଧିକା ଓ ଅପ୍ରାକୃତ ବା ଦିବ୍ୟ ପ୍ରେମର ବିଗ୍ରହ ରୂପିଣୀ ରୂପେ ସେ ପରିକଳ୍ପିତା । ସାଧାରଣତଃ କୃଷ୍ଣଙ୍କ ପ୍ରତି ଅନୁରାଗ ବହୁ ଜନ୍ମର ସାଧନା ଫଳରେ ହିଁ ଲାଭ ହୋଇଥାଏ । ମାତ୍ର ରାଧାଙ୍କର କୃଷ୍ଣଙ୍କ ପ୍ରତି ଅନୁରକ୍ତି ସ୍ୱତଃସ୍ଫୂର୍ତ୍ତି ଓ ସ୍ୱାଭାବିକ । ସେହି ଦୁର୍ଲ୍ଲଭ କୃଷ୍ଣାନୁରକ୍ତିକୁ ପରିତ୍ୟାଗ କରିବାକୁ ସେ ଚେଷ୍ଟା କରିଅଛନ୍ତି । ମାତ୍ର ତାହା ତାଙ୍କ ହୃଦୟରୁ ପରିତ୍ୟକ୍ତ ହେବାର ବିଷୟ ନୁହେଁ । ଏହି କାବ୍ୟରେ ତାହାର ଚିତ୍ର ପ୍ରସଙ୍ଗ କ୍ରମେ ବର୍ଣ୍ଣିତ ହୋଇଅଛି । ଲୌକିକ ପ୍ରେମିକା ସୁଲଭ ଭାବରେ ହିଁ ତାହା ଚିତ୍ରିତ ।

ବୃଷଭାନୁ ଓ ତାହାଙ୍କ ମହିଷୀ କୀର୍ତ୍ତିଦାଙ୍କର କନ୍ୟା ରାଧା । ରୂପ ଗୁଣରେ ସେ ଅତୁଳନୀୟା । ତାହାଙ୍କର କୈଶୋର ଓ ଯୌବନକୁ କବି ସୁନ୍ଦରଭାବରେ ଚିତ୍ରଣ କରିଅଛନ୍ତି ।

"ବିଶ୍ୱ କାନ୍ତିସାର ପୀୟୂଷେ ଗୋଳି
ବିଧି ବନାଇଛି ଶୋଭା ପିତୁଳି
ବର ଗାତ୍ର ଛାଞ୍ଚରେ ଢାଳିଲା
ବିଚିତ୍ର ହେମ ରସାଣେ ଶାଣିଲା

ବିଗ୍ରହ ଲାବଣ୍ୟ ନୀରେ ନେ,

ବୁଡ଼ାଇ ଥୋଇ ଜୀବନ୍ୟାସ କରିଛି ପରି ମୋହନ ମନ୍ତ୍ରେ ।"

(ଗ୍ର — ୨୨ । ୬)

ଚନ୍ଦ୍ରସେଣା ମାତାଙ୍କ ସହିତ ପୂର୍ବରୁ ସମ୍ମତି ଥିବାରୁ ଚନ୍ଦ୍ରସେଣାଙ୍କ ସହିତ ରାଧାଙ୍କର ବିବାହ ସମ୍ପାଦିତ ହୋଇଥିଲା । ଏକଦା ସେ ପୌର୍ଣ୍ଣମାସୀଙ୍କଠାରୁ ଶ୍ରୀକୃଷ୍ଣଙ୍କ ନାମ ଶ୍ରବଣ କରି ବିମୋହିତ ହୋଇ ପଡ଼ିଥିଲେ- ଓ ତାହାଙ୍କଠାରେ ମଧୁର ଭାବାଶ୍ରୟୀ ଲକ୍ଷଣ ପ୍ରତିଫଳିତ ହୋଇଥିଲା ।

(୭ମ, ୮ମ, ୯ମ ଶ୍ଳୋକ) । ସଖୀ ବିଶାଖାଙ୍କଠାରୁ କୃଷ୍ଣଙ୍କର ଏକ ଚିତ୍ରପଟ ଦେଖି ତାହାଙ୍କର ବିରହ ଉତ୍କଣ୍ଠା ବୃଦ୍ଧି ପାଇଥିଲା (୧୦ମ ଓ ୧୧ଶ ଶ୍ଳୋକ) । କୃଷ୍ଣଙ୍କର ଚିତ୍ରପଟ ଦର୍ଶନ କରି, ତାହାଙ୍କ ବଂଶୀ ଧ୍ୱନି ଶ୍ରବଣ କରି ଓ ଏକଦା ତାଙ୍କୁ ସଶରୀରରେ ଦେଖିବାକୁ ପାଇ ସେ ତିନିଜଣଙ୍କ ପ୍ରତି ଏକାଧାରରେ ପ୍ରେମାଶକ୍ତ ହୋଇ ପଡ଼ିଛନ୍ତି ବୋଲି ଅନୁଶୋଚନା କରିବାକୁ ଲାଗିଲେ (୧୨ଶ ଶ୍ଳୋକ) । ଏହି ପ୍ରସଙ୍ଗର ଉଲ୍ଲେଖ 'ବିଦଗ୍ଧ ମାଧବ' ନାଟକରେ ମଧ୍ୟ ପରିଲକ୍ଷିତ ହୁଏ ।

'ଏକସ୍ୟ ଶ୍ରୁତମେବ ଲୁମ୍ପତି ମତିଂ କୃଷ୍ଣେତି ନାମାକ୍ଷରମ୍
ସାନ୍ଦ୍ରୋନ୍ମାଦପରମ୍ପରାମୁପନୟତ୍ୟନ୍ୟସ୍ୟ ବଂଶୀ କଳଃ ।
ଏଷ ସ୍ନିଗ୍ଧ ଘନ ଦ୍ୟୁତିର୍ମନସି ମେ ଲଗ୍ନଃ ପଟେ ବୀକ୍ଷଣାତ୍,
କଷ୍ଟଂ ଧିକ୍ ପୁରୁଷତ୍ରୟେ ରତିରଭୂନ୍ମନ୍ୟେ ମୃତିଂ ଶ୍ରେୟସୀମ୍ ।'

ଯୋଗମାୟାଙ୍କ ଯୋଗୁଁ କୃଷ୍ଣଙ୍କ ଅଙ୍ଗ ସ୍ପର୍ଶ ଲାଭ କରିବା ପରେ କୃଷ୍ଣ ଅନ୍ତର୍ହିତ ହୋଇଯିବା କେବଳ ରାଧା ବିଳାପ କରିଛନ୍ତି ଓ କନ୍ଦର୍ପ, ଚନ୍ଦ୍ରାଦିଙ୍କୁ ନିନ୍ଦା କରିଛନ୍ତି (୩୨-୩୮ଶ ଶ୍ଳୋକ) । ଏହି ପ୍ରୀତିର ଗୁଣ ଓ ପ୍ରଭାବ ସମ୍ପର୍କରେ ରାଧାଙ୍କ ପ୍ରଶ୍ନର ଉତ୍ତରରେ ବିଶାଖା ପ୍ରୀତିର ମାହାତ୍ମ୍ୟ ବର୍ଣ୍ଣନା କରିଅଛନ୍ତି ଓ ରାଧା ତାହା ଶୁଣି କୃଷ୍ଣ ପ୍ରେମରେ ଅଧିକ ତନ୍ମୟ ହୋଇ ମୂର୍ଚ୍ଛିତା ହୋଇପଡ଼ିଅଛନ୍ତି । ମୂର୍ଚ୍ଛା ଭଙ୍ଗ ପରେ କୃଷ୍ଣ ନାମ କୀର୍ତ୍ତନ ତାଙ୍କର ଏକମାତ୍ର ଧ୍ୟେୟ ହୋଇଅଛି (୪୧ଶ ଶ୍ଳୋକ) ।

ଆଉଦିନେ ବୃନ୍ଦାବନରେ କୃଷ୍ଣଙ୍କୁ ଦେଖି ସେ ତାହାଙ୍କ ମାନସିକ ପ୍ରତିକ୍ରିୟାକୁ ସଖୀମାନଙ୍କ ଆଗରେ ବ୍ୟକ୍ତ କରି ଅଛନ୍ତି (ଶ୍ଳୋ-୧୭ ଓ ୪୮) । ଦୂତୀଙ୍କଠାରୁ କୃଷ୍ଣଙ୍କର ବିରହୋତ୍କଣ୍ଠା ଶ୍ରବଣ କରି ସେ ନିରତିଶୟ ଦୁଃଖିତା ହୋଇ ପଡ଼ିଛନ୍ତି । କୃଷ୍ଣଙ୍କଠାରୁ ପ୍ରେମ ପତ୍ର ବା ଚିଠାଉ ପାଇ ସେ ମଧ୍ୟ ତାର ପ୍ରତ୍ୟୁତ୍ତର ଲେଖି ପଠାଇ ଅଛନ୍ତି ଓ କାମ୍ୟ ବନରେ ସେମାନଙ୍କର ସାକ୍ଷାତ୍ ହେବ ବୋଲି ଜଣାଇ ଅଛନ୍ତି (ଶ୍ଳୋ-୫୫) । କୃଷ୍ଣ-ପ୍ରୀତି ଭାବନାରେ

ଅତୀବ ଉତ୍କଣ୍ଠିତା ହେବା ଫଳରେ ସେ ଦିବ୍ୟୋନ୍ମାଦ ଦଶା ଲାଭ କରି ଅଛନ୍ତି ଓ ମୂର୍ଚ୍ଛିତା ହୋଇପଡ଼ିଛନ୍ତି । ପୌର୍ଣ୍ଣମାସୀଙ୍କ ପରାମର୍ଶାନୁକ୍ରମେ ବିଦଗ୍ଧା ରାଧା କାମ୍ୟବନକୁ ସୂର୍ଯ୍ୟପୂଜା ଛଳରେ ଯାଇଅଛନ୍ତି (ଛା-୭୯) ଓ କୃଷ୍ଣଙ୍କୁ ସେଠାରେ ଦେଖି ତାହାଙ୍କ ଗଳାରେ ମାଲ୍ୟାର୍ପଣ କରିଅଛନ୍ତି । ଏହିପରି ନବୀନ ମିଳନ କାଳରେ ହଠାତ୍ ସେଠାକୁ ଜଟିଳାର ଆଗମନ ସମ୍ବାଦ ଶୁଣି କୃଷ୍ଣ ପଳାଇ ଯାଇଅଛନ୍ତି ଓ ପରେ ବଟୁ ବେଶରେ ଆସି ସୂର୍ଯ୍ୟ ପୂଜା ସମାପନାନ୍ତେ ବିଦାୟ ନେଇଅଛନ୍ତି । ଯଶୋଦାଙ୍କ ଅନୁରୋଧରେ ରାଧା କୃଷ୍ଣଙ୍କ ଲାଗି ଯଶୋଦାଙ୍କ ଗୃହରେ ନାନାବିଧ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରି ଅଛନ୍ତି ।

ଏହାପରେ ରାଧାଙ୍କ ଠାରେ ବିପ୍ରଲବ୍ଧା ନାୟିକାର ଭାବ ପରିଲକ୍ଷିତ ହୋଇଅଛି (୭୯ଶ ଛାନ୍ଦ) ! ସଖୀମାନଙ୍କ ନିକଟରେ ସେ କୃଷ୍ଣଙ୍କ ବଂଶୀର ମହତ୍ତ୍ୱ ବିଷୟ ବର୍ଣ୍ଣନା କରିଅଛନ୍ତି (୭୯ଶ ଛାନ୍ଦ) । ସଖୀମାନଙ୍କ ସହିତ ରାଧା ଗୋପେଶ୍ୱର ଶିବ ପୂଜି ଯାଉଥିବାବେଳେ ପୂଜକ ବ୍ରାହ୍ମଣ ବେଶଧାରୀ କୃଷ୍ଣଙ୍କ ସହିତ ତାଙ୍କର ସାକ୍ଷାତ ହୋଇଅଛି, ମାତ୍ର ହଠାତ୍ ଜଟିଳାର ଉପସ୍ଥିତି ଯୋଗୁଁ କୃଷ୍ଣଙ୍କ ସହିତ ତାଙ୍କର ମିଳନ ହୋଇ ପାରି ନାହିଁ । ଗୃହକୁ ଫେରି ସେ ଅଧିକ ଭାବବିହ୍ୱଳା ହୋଇ ପଡ଼ିଛନ୍ତି । ଦୂତୀଠାରୁ କୃଷ୍ଣଙ୍କର ବିରହାବସ୍ଥା ଶ୍ରବଣ କରି ତାହାଙ୍କର କାତରତା ବଢ଼ିଯାଇଛି । ଦୂତୀ ମାଧ୍ୟମରେ ସେ କୃଷ୍ଣଙ୍କ ନିକଟକୁ ବାଚିକ ସନ୍ଦେଶ ପଠାଇ ଅଛନ୍ତି— 'ଧୀରେ ରାଧା କର ଧରି କହୁଛନ୍ତି ଦୂତୀକି' (୭୫ ଛାନ୍ଦ) ।

ଏହାଛଡ଼ା କୃଷ୍ଣ କପଟରେ ତାହାଙ୍କ ସହିତ ମିଳିତ ହେବାଲାଗି ଶବରୁଣୀ, ନାପିତୁଣୀ, ଗାୟୁଣୀ, ଗନ୍ଧିନୀ, କାଚରୁଣୀ, ରଜକିନୀ ଓ ପାଟବାଣୀ ବେଶଧରି ଆସିଛନ୍ତି, ତାହା କବି ବର୍ଣ୍ଣନା କରିଅଛନ୍ତି । ଶେଷରେ ସଖୀମାନେ ରାଧାଙ୍କୁ ଦିବ୍ୟ ଶୁକ୍ଳାଭିସାରିକା ବେଶରେ ସଜ୍ଜିତା କରିଅଛନ୍ତି (ଛା: ୮୦) ଓ ରାଧା କୃଷ୍ଣଙ୍କ ସହିତ ମିଳିତ ହେବାଲାଗି ସଖୀଙ୍କ ସହ ବୃନ୍ଦାବନକୁ ଯାଇଅଛନ୍ତି ( ଛା: ୮୧ ) । ଅବଶେଷରେ ରାଧା କୃଷ୍ଣଙ୍କ ସହ ସମ୍ମିଳିତ ହେଲେ ଓ

ଜଣାନ୍ତ ପୂର୍ବରୁ ସଖୀ ଲଳିତା ଓ ବିଶାଖା ସହ ସ୍ୱପ୍ନରେ ପ୍ରତ୍ୟାବର୍ତ୍ତନ କରିଥିଲେ (ପୃ: ୮୪) । ପ୍ରଭାତରେ ସଖୀମାନେ ତାହାଙ୍କୁ ମାର୍ଜନା ଓ ବେଶ ରଚନା କରି ହାସ୍ୟ ପରି ହାସ କରିଛନ୍ତି ।

## ପୌର୍ଣ୍ଣମାସୀ

ବିଦଗ୍ଧ ମାଧବ ନାଟକର ମୁଖ୍ୟ ଚରିତ୍ରମାନଙ୍କମଧ୍ୟରୁ ପୌର୍ଣ୍ଣମାସୀ ଅନ୍ୟତମ । ତାହାଙ୍କ ଚାତୁର୍ଯ୍ୟ ଯୋଗୁଁ ରାଧାକୃଷ୍ଣଙ୍କ ମିଳନ ସମ୍ଭବପର ହୋଇଅଛି । ସେ ସାନ୍ଦୀପନି ମୁନିଙ୍କର ଜନନୀ, ଦେବର୍ଷି ନାରଦଙ୍କ ଶିଷ୍ୟା, ଶୁକ୍ଳକେଶୀ ଓ ଗୈରିକ ବସନା । ମଧୁମଙ୍ଗଳ ଓ ନାନ୍ଦୀମୁଖୀଙ୍କୁ ସେ ଯଥାକ୍ରମେ କୃଷ୍ଣ ଓ ରାଧାଙ୍କର ସଖା, ସଖୀ ରୂପେ ନିଯୋଜିତ କରି ଅଛନ୍ତି (୧ମ ଅଙ୍କ—୩୧) । ସେ ଯୋଗମାୟା ଦେବୀଙ୍କ ଅବତାର ଭାବେ ପ୍ରସିଦ୍ଧା । ସେହାଙ୍କ ଅଘଟନ ଘଟନ ପଟିୟସୀ ଶକ୍ତି ଯୋଗୁଁ ବୃନ୍ଦାବନ ଲୀଳାରେ ଚମତ୍କାରିତା ସମ୍ପାଦିତ ହୋଇଅଛି । ରାଧା ଓ ଅଭିମନ୍ୟୁଙ୍କ ବିବାହପରେ ସେ କୃଷ୍ଣଙ୍କୁ ଲଡ଼ୁ ବାଣ୍ଟିବାବେଳେ ତାହାଙ୍କୁ ରାଧାଙ୍କ ବିଷୟ କହିଅଛନ୍ତି । ସେ ବିରହିଣୀ ରାଧାଙ୍କୁ କୃଷ୍ଣଙ୍କ ନିକଟକୁ ପତ୍ର ଦେବାଲାଗି ପରାମର୍ଶ ଦେଇଅଛନ୍ତି (୨ୟ ଅଙ୍କ । ୩୨) ।

ବଦରାଧ ଚନ୍ଦ୍ରାମଣି କାବ୍ୟରେ ମଧ୍ୟ ପୌର୍ଣ୍ଣମାସୀଙ୍କୁ ଏହିପରି ଭାବରେ ଚିତ୍ରଣ କରାଯାଇଅଛି । ଏହି କାବ୍ୟରେ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ତାହାଙ୍କର ଉପସ୍ଥିତି ପରିଲକ୍ଷିତ ହୁଏ । ସେ କଥାବସ୍ତୁକୁ ଗତିଶୀଳ କରାଇବାରେ ହେତୁ ସ୍ୱରୂପ । ରାଧିକାଙ୍କୁ ସେ 'ଶ୍ରୀମତୀ' ନାମରେ ଭୂଷିତା କରିଥିଲେ ଓ ଜନ୍ମକାଳରେ ରାଧିକାଙ୍କର ଆଖି ନ ଫିଟିବାରୁ ଯଶୋଦାଙ୍କ ସହ କୃଷ୍ଣଙ୍କୁ ଆଣି ଦେଖାଇଥିଲେ । ଏହି ପ୍ରସଙ୍ଗଟି କବି ଅଭିମନ୍ୟୁ ତାହାଙ୍କ ଗୁରୁ ସଦାନନ୍ଦ

କବିସୂର୍ଯ୍ୟ ବ୍ରହ୍ମାଙ୍କ ଗ୍ରନ୍ଥରୁ ଆହରଣ କରିଥିବା ଅନୁମେୟ । (୧) । ବିଦଗ୍ଧ ଚନ୍ଦ୍ରମଣିରେ ମଧ୍ୟ ପୌର୍ଣ୍ଣମାସୀ କୃଷ୍ଣଙ୍କ ଲଡ଼ୁ ବାଣ୍ଟିବା ପ୍ରସଙ୍ଗର ଉଲ୍ଲେଖ ଅଛି । ତାହାଙ୍କ ପରାମର୍ଶରେ ଶ୍ରୀକୃଷ୍ଣ ଗୋବର୍ଦ୍ଧନ ମଲ୍ଲ ଗୃହକୁ ଗୋ-ଶାସ୍ତ୍ର ଅଧ୍ୟୟନ କରିବା ଉଦ୍ଦେଶ୍ୟରେ ଗମନ କରିଥିଲେ । ଶ୍ରୀକୃଷ୍ଣଙ୍କୁ ସେ ପ୍ରଥମେ ରାଧାଙ୍କ ନାମ ଶୁଣାଇଥିଲେ । ରାଧା ନିତ ସୂର୍ଯ୍ୟ ପୂଜା କଲେ ଚନ୍ଦ୍ରସେଣାର ଶତ୍ରୁ ନାଶ ହେବ ବୋଲି ସେ ଜଟିଳାକୁ କହିଥିଲେ (୭ମ ଛାନ୍ଦ) । ରାଧା ଓ କୃଷ୍ଣଙ୍କର ସ୍ୱପ୍ନ-ମିଳନ ପରେ ବିଚ୍ଛେଦ ହେବାରୁ ସେ ରାଧାଙ୍କର ବିରହୋତ୍କଣ୍ଠିତା ଅବସ୍ଥା ଦେଖି ତାହାଙ୍କୁ 'ଓଁ ଗୋକୁଳ ପ୍ରାଣସ୍ଥ କୁସୁମ ବାଣସୁଧୀ ମନ୍ତ୍ର' ମନ୍ତ୍ର ଜପିବାକୁ ଉପଦେଶ ଦେଇଥିଲେ (୩୨ଶ ଛାନ୍ଦ) । ଉତ୍କଣ୍ଠିତା ରାଧା ଅବଶ, ମୂର୍ଚ୍ଛିତା ଓ ଉନ୍ମାଦଗ୍ରସ୍ତା ହେବାର ଦେଖି ସେ ଜଟିଳାକୁ ବହୁ ଆକଟ କରିଥିଲେ ଏବଂ ରାଧା ସୂର୍ଯ୍ୟପୂଜା କରିବାକୁ ବୃନ୍ଦାବନ ନ ଯିବାରୁ ତାହାଙ୍କର ଏପରି ଅବସ୍ଥା ହୋଇଅଛି ବୋଲି ଛଳନା କ୍ରମେ କହିଥିଲେ । ସୂର୍ଯ୍ୟ ପୂଜାପରେ ଯଶୋଦାଙ୍କ ଅନୁରୋଧ ରକ୍ଷା କରିବାକୁ ସେ ଜଟିଳାକୁ ପରାମର୍ଶ ଦେଇଛନ୍ତି ଓ ଯଶୋଦାଙ୍କୁ ମଧ୍ୟ ରାଧାଙ୍କୁ ନିମନ୍ତ୍ରଣ କରି ଆଣିବା ପାଇଁ ପ୍ରବର୍ତ୍ତାଇଛନ୍ତି । କୃଷ୍ଣଙ୍କ ଶୀର୍ଣ୍ଣ ତନୁ ପାଇଁ ଯଶୋଦାଙ୍କ ଖେଦୋକ୍ତି ଶୁଣି ସେ ମିଷ୍ଟ ହସ୍ତା, ପାକକର୍ମ ନିପୁଣା ରାଧାଙ୍କ ଦ୍ୱାରା ପ୍ରସ୍ତୁତ ଖାଦ୍ୟ ସାମଗ୍ରୀ କୃଷ୍ଣ ଭୋଜନ କଲେ ତାହାଙ୍କର ଶରୀର ଓ ଆୟୁଷ ବୃଦ୍ଧି ହେବ ବୋଲି ପରାମର୍ଶ ଦେଇଅଛନ୍ତି । ରାଧାକୃଷ୍ଣଙ୍କ

---

(୧) ଦୁହିତା ଜାତ ହୋଇଛି ତାତ ଜନନୀ ମନରେ ଦୁଃଖୀ
ସ୍ତନରୁ କ୍ଷୀର ନ ପିଏ ତାର ନ କାନ୍ଦେ ନ ଫିଟେ ଆଖି । ୨ । ୧୪

× × ×

ମୋହନ ଗୀର ସୁଧା ମଧୁର ପାନ କରି କର୍ଣ୍ଣ ଦ୍ୱାରେ
ଲୋଚନ ଫେଡ଼ି ଚାହିଁଲେ ମୋଡ଼ି ହୋଇ ରାଧା ସେ କାଳରେ ୨ । ୨୦ ।
( ବୈଦଗ୍ଧି ଚନ୍ଦ୍ରମଣି-ସଦାନନ୍ଦ କବିସୂର୍ଯ୍ୟ)

ମିଳନପରେ କୃଷ୍ଣଙ୍କର ନିଦ୍ରାଳସ ମୁଖଶୋଭାଦର୍ଶନ କରିବା ଲାଗି ପୌର୍ଣ୍ଣମାସୀ ଯଶୋଦାଙ୍କ ପୁରକୁ ଆଗମନ କରିଅଛନ୍ତି ଓ ତାଙ୍କୁ ସଙ୍ଗତା ବନକୁ ପଠାଇବା ପାଇଁ ଯଶୋଦାଙ୍କୁ ପରାମର୍ଶ ଦେଇଅଛନ୍ତି । ବନରେ ରାଧା ଓ କୃଷ୍ଣଙ୍କର ଅବାଧ ମିଳନ ପାଇଁ ହିଁ ତାଙ୍କର ଏ ପ୍ରଚେଷ୍ଟା !

## ଚନ୍ଦ୍ରାବଳୀ

ଗୋବର୍ଦ୍ଧନ ମଲ୍ଲଙ୍କ ପତ୍ନୀ ଚନ୍ଦ୍ରାବଳୀ ସହ କୃଷ୍ଣଙ୍କ ମିଳନ କଥା 'ବିଦଗ୍ଧ ମାଧବ' ନାଟକର ପ୍ରଥମ ଅଙ୍କରେ ସୂଚିତ । ବିଦଗ୍ଧ-ଚିନ୍ତାମଣିରେ ସେହି ପ୍ରସଙ୍ଗଟି ବିସ୍ତୃତଭାବରେ ପରିକଳ୍ପିତ ଓ ବର୍ଣ୍ଣିତ ହୋଇଅଛି । ବିଦଗ୍ଧ-ମାଧବରେ ବର୍ଣ୍ଣିତ ଚନ୍ଦ୍ରାବଳୀର ଦୁଇ ସଖୀଙ୍କର ନାମ ପଦ୍ମା ଓ ଶୈବ୍ୟା । ବିଦଗ୍ଧ-ଚିନ୍ତାମଣିରେ ମଧ୍ୟ ଚନ୍ଦ୍ରାବଳୀର ସଖୀଦ୍ୱୟ ଏହି ନାମ ବିଶିଷ୍ଟା । ପ୍ରଥମ ଦର୍ଶନରେ ଚନ୍ଦ୍ରାବଳୀ କୃଷ୍ଣଙ୍କ ପ୍ରତି ଆସକ୍ତ ହୋଇ ପଡ଼ିଛନ୍ତି ଓ କୃଷ୍ଣଙ୍କ ଚଟାହର ପ୍ରତି ହୃନ୍ଦର ପଠାଇଛନ୍ତି (୧୯ଶ ଶ୍ଳୋକ) । ପଦ୍ମାର ଚତୁରତା ଫଳରେ ଚନ୍ଦ୍ରାବଳୀ ଗୌରୀ ପୂଜା କରିବାକୁ ବୃନ୍ଦାବନକୁ ଆସିଛନ୍ତି ଓ ସେଠାରେ ଦେବର କୃଷ୍ଣଙ୍କ ସହ ତାଙ୍କର ମିଳନ ହୋଇଅଛି । କୃଷ୍ଣଙ୍କର ଚନ୍ଦ୍ରାବଳୀ ପ୍ରତି ଚାଟୂକ୍ତି ଓ ସମ୍ଭୋଗକୁ କବି ବିସ୍ତୃତଭାବରେ ବର୍ଣ୍ଣନା କରିଅଛନ୍ତି (୨୦ଶ ଓ ୨୧ଶ ଶ୍ଳୋକ); ମାତ୍ର ବିଦଗ୍ଧ-ମାଧବରେ ଏହାର ଉଲ୍ଲେଖ ନାହିଁ ।

ଅନ୍ୟାନ୍ୟ ଚରିତ୍ରମାନଙ୍କ ମଧ୍ୟରୁ ଯଶୋଦାଙ୍କ ଚରିତ୍ର ଚିତ୍ରଣରେ କବିଙ୍କର ଅନୁରାଗ ପରିଲକ୍ଷିତ ହୁଏ । ମାତୃହୃଦୟର ସମସ୍ତ କୋମଳତା ଓ ବାତ୍ସଲ୍ୟ ମମତାର ପ୍ରତୀକ ରୂପେ ଯଶୋଦା ଏହି କାବ୍ୟର ବିଭିନ୍ନ ସ୍ଥାନରେ ଚିତ୍ରିତ । କୃଷ୍ଣଙ୍କର ଦୈହିକ ଶୀର୍ଣ୍ଣତା ଯୋଗୁଁ ତାହାଙ୍କ ଭାବନା—ହୁଏତ ଏହା ତାହାଙ୍କର ସ୍ନେହାତିଶଯ୍ୟ ଜନିତ ଅହେତୁକ ଭାବନା ମାତ୍ର । କୃଷ୍ଣଙ୍କୁ ଭୋଜନ କରାଇ ଆତ୍ମତୃପ୍ତି, କୃଷ୍ଣଙ୍କର

ଗୋଚାରଣ ଜନିତ ବିଚ୍ଛେଦ ଯୋଗୁଁ ଖେଦ (୬୭ଶ ଛାନ୍ଦ), ଶ୍ରାନ୍ତ କୃଷ୍ଣଙ୍କ ପ୍ରତ୍ୟାଗମନ କାଳୀନ ସନ୍ଧ୍ୟା ଆଗତରେ ବିଳମ୍ବ ହେବାରୁ ବାତ୍ସଲ୍ୟ ସ୍ନେହରେ ତାଙ୍କୁ ଉଠାଇବା (୮ମ ଛାନ୍ଦ) ପ୍ରଭୃତି ତାହାଙ୍କର ବାତ୍ସଲ୍ୟ ମମତା ଭରା ମାତୃ ହୃଦୟର ପରିଚାୟକ ।

ଛତ ହରିଣୀ ବଧିରେ ଜବ ଅସ୍ତ୍ରକୁ ବିଧିରେ
ତୋ ଆସିବା ବେଳ ଚାହୁଁ ଥାଇରେ ।
ଡାଣ୍ଡକୁ ଯାଏ ଦଉଡ଼ି ତୁ ମୋର ଅନ୍ଧ ଲଉଡ଼ି
ତୋ ବିନା ମୁଁ କି କରି ଜୀଅଇରେ । ୩୦ ।

ତୁ ମୋର ରଙ୍କ ପସରା ତୋ ବିନୁ ନାହିଁ ଦୋସରା
କାହା ମୁଖ ଚାହିଁ ନେବି ଦିନରେ
ବୃଦ୍ଧ କାଳରେ ନନ୍ଦନ ତୁ ମୋର ହୃଦଚନ୍ଦନ
କଣ୍ଠ ହାର କବର ଜୀବନରେ । ୩୧ ।
କି ସୁଖ ଘରେ ନାହିଁକି ମୋ ସୁଖ ସାରୁ କାହିଁକି
କାନନକୁ ଯାଉ କାହିଁ ପାଇଁ ରେ
ତୁ ମୋର ହୃଦପଦକ ହେଉଥାଇଁ ଧକ ଧକ
ଅସୁରଙ୍କ ଚରିତ ଚକ୍ରେଇରେ । ୩୨ ।

(ଚତୁଃ ଷଷ୍ଠୀତମ ଛାନ୍ଦ)

## ସଖା ଓ ସଖୀ

ରାଧାକୃଷ୍ଣ ଲୀଳାରେ ସଖୀର ଉପସ୍ଥିତି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଚୈତନ୍ୟ ଚରିତାମୃତରେ ସଖୀର ମାହାତ୍ମ୍ୟ ପ୍ରସଙ୍ଗରେ ବର୍ଣ୍ଣିତ ଅଛି—

'ସବେ ଏକ ସଖୀଗଣେର ଏହା ଅଧିକାର
ସଖୀ ହଇତେ ହୟ ଏଇ ଲୀଳାର ବିସ୍ତାର ।
ସଖୀ ବିନା ଏଇ ଲୀଳା ପୁଷ୍ଟ ନାହିଁ ହୟ
ସଖୀ ଲୀଳା ବିସ୍ତାରିୟା ସଖୀ ଆସ୍ୱାଦୟ ।

ସଖୀ ବିନା ଏଇ ଲୀଳାୟ ଅନ୍ୟେର ନାହିଁ ଗତି
ସଖୀ ଭାବେ ଯେଇ ତାଁରେ କରେ ଅନୁଗତି ।
ରାଧାକୃଷ୍ଣେର କୁଞ୍ଜ ସେବା ସାଧ୍ୟ ସେଇ ପାୟ
ସେଇ ସାଧ୍ୟ ପାଇତେ ଆର ନାହିଁକ ଉପାୟ ।
ସଖୀର ସ୍ୱଭାବ ଏକ ଅକଥ୍ୟ କଥନ
କୃଷ୍ଣସହ ନିଜ ଲୀଳାୟ ନାହିଁ ସଖୀର ମନ ।
କୃଷ୍ଣ ସହ ରାଧିକାର ଲୀଳା ଯେ କରାୟ
ନିଜ କେଲହିତେ ତାହେ କୋଟି ସୁଖ ପାୟ ।'

(ମଧ୍ୟ । ୮ମ)

ଶ୍ରୀମଞ୍ଜରୀ ପ୍ରଭୃତି ଶ୍ରୀରାଧାଙ୍କ ପ୍ରଧାନ ସଖୀମାନଙ୍କର ଅନୁଗତ ହୋଇ ଓ ନିଜର ନିତ୍ୟସିଦ୍ଧ ସଖୀ ଦେହ ଭାବନା କରି ଅଖିଳ ରସାମୃତ ମୂର୍ତ୍ତି ଶ୍ରୀକୃଷ୍ଣଙ୍କ ସହିତ ରାଧାଙ୍କ ସେବାହିଁ ରୂପ ଗୋସ୍ୱାମୀଙ୍କ ଉପାସନାରେ ସାର ମର୍ମ । ଓଡ଼ିଆ କାବ୍ୟ ସାହିତ୍ୟରେ ନାୟକ-ନାୟିକାଙ୍କର ମିଳନ ସମ୍ପାଦନ କାରିଣୀ ସଖୀର ସମ୍ଭବତଃ ପ୍ରଥମ ସଫଳ ପ୍ରୟୋଗ ଏହି ବିଦଗ୍ଧ ଚିନ୍ତାମଣିରେ ପରିଲକ୍ଷିତ ହୁଏ । ଏହି କାବ୍ୟରେ ରାଧାଙ୍କର ବହୁ ସଖୀଙ୍କର ଉଲ୍ଲେଖ ଦେଖାଯାଏ ।

'ଜୟ ବୃନ୍ଦାଦେବୀ, ନିତ୍ୟ ସାଧବୀ
ଲଳିତେ ବିଶାଖିକେ ରଙ୍ଗଦେବୀ
ଚଟେ ଚମ୍ପକ ଲଳିତେ ସୁଦେବୀ
ଧନିଷ୍ଠା ତୁଙ୍ଗ ବିଦ୍ୟା ସିନ୍ଧା ସେବୀ ।
× × × ×
ଶ୍ରୀ ରୂପ ମଞ୍ଜରୀ, ରସ ମଞ୍ଜରୀ,
ଅନଙ୍ଗ ମଞ୍ଜରୀ, ଗୁଣ ମଞ୍ଜରୀ
କସ୍ତୁରୀ ତୁଳସୀ ପ୍ରେମ ସାଗରୀ,
କି କରି ଏ ଦୀନ ହେବ କିଙ୍କରୀ ।'

(ଛାଃ ୬୦ । ୪୯-୫୦)

କୃଷ୍ଣଙ୍କ ନାମ ଶ୍ରବଣପରେ ରାଧାଙ୍କ ବିରହଦଶା ଉପସ୍ଥିତ ହେବା-ଠାରୁ ରାଧାକୃଷ୍ଣଙ୍କର ମିଳନୋତ୍ତର ବେଶରଚନା ପର୍ଯ୍ୟନ୍ତ ସଖୀମାନଙ୍କର ଉପସ୍ଥିତି କାର୍ଯ୍ୟର ସର୍ବତ୍ର ଦେଖିବାକୁ ମିଳଇ । ରାଧାଙ୍କର ବିରହୋତ୍କଣ୍ଠା ଯୋଗୁଁ ସଖୀମାନଙ୍କର ବିରହୋତ୍କଣ୍ଠା ମଧ୍ୟ ଅପରିସୀମ । ରାଧା କୃଷ୍ଣଙ୍କର ସ୍ୱପ୍ନମିଳନ ପୂର୍ବରୁ ସଖୀମାନେ ରାଧାଙ୍କୁ ସୁସଜ୍ଜିତ କରିଅଛନ୍ତି (୩୦ଶ ଛାନ୍ଦ) । ବିରହୋତ୍କଣ୍ଠିତା ରାଧାଙ୍କ ଅବସ୍ଥା ଦେଖି ସେମାନେ ବହୁ ଚିନ୍ତିତା ଓ ବ୍ୟଥିତା ହୋଇଛନ୍ତି (୪୯ଶ ଛାନ୍ଦ) । ପୁଷ୍ପ ତୋଳିବା ଛଳରେ ଲଳିତା, ଚମ୍ପକ, ଲତିକା ପ୍ରଭୃତି ସଖୀମାନେ ବୃନ୍ଦାବନକୁ ଯାଇଅଛନ୍ତି ଓ କୃଷ୍ଣଙ୍କ ସଙ୍ଗେ ଆଳାପ କରି ତାହାଙ୍କ ମନୋଭାବ ବୁଝି ଆସିଛନ୍ତି (୫୦ଶ ଛାନ୍ଦ) । କୃଷ୍ଣଙ୍କ କପଟ ଓ ଔଦାସୀନ୍ୟ ବିଷୟ ରାଧାଙ୍କ ନିକଟରେ ସଖୀମାନେ ପ୍ରକାଶ କରି ଅଛନ୍ତି । ରାଧାଙ୍କ ବିରହୋତ୍କଣ୍ଠିତା ଅବସ୍ଥା ଦେଖି ସେମାନେ ଅତ୍ୟନ୍ତ କାତର ହୋଇ-ପଡ଼ିଅଛନ୍ତି । ଏଣୁ ସେମାନଙ୍କ ଭାବନା ବର୍ଣ୍ଣନା କରି କବି ଲେଖିଛନ୍ତି—

‘ସଜନୀ ଜାଇ ଥିଲେ ସବୁ ଅଛୁ
ସଂସାର ଭସ୍ମ ଆଉ ନାହିଁ କିଛୁ
ସବୁ ପଛକେ ଗୋ ମାନ ଏହିତ
ସମସ୍ତେ ଭୁଲି ଗୋ ଯିବା ତ୍ୱରିତ
ଶରଣ ପଶିବା
ସଂଗୀ-ହିତକୁ କୃଷ୍ଣ ମନାଇବା ।’

(ବି. ଚି. ୪୯।୩)

ରାଧା ସୂର୍ଯ୍ୟ ପୂଜା କରିଯିବା ପୂର୍ବରୁ ତାହାଙ୍କୁ ଉପଯୁକ୍ତ ବେଶ ଭୂଷାରେ ସଖୀମାନେ ସୁସଜ୍ଜିତ କରିଅଛନ୍ତି । ରାଧାକୃଷ୍ଣଙ୍କର ମିଳନ ହେବ—ଏଥିପାଇଁ ; ସେମାନଙ୍କର ଆଶା ଓ ଆନନ୍ଦର ସୀମା ନାହିଁ । ଏହି ମିଳନ ଲୀଳାକୁ ଭାବନା କରି ସେମାନେ ଆତ୍ମହରା ।

'ମାଧବ ତାଳେ ମାଧବ ସଙ୍ଗତେ,
ମାଧବୀ କୁଞ୍ଜେ ମାଧବୀ ମିଳନ୍ତେ
ଶ୍ରୀମୁଖଚନ୍ଦ୍ର ଦେଖାଦେଖି ବେଳେ,
ଆନନ୍ଦ ସିନ୍ଧୁ ଉଚ୍ଛୁଳବ ବଳେ
ଜଗନ୍ନାଥ ଅଛି । ଶୋଭା ସୁଧା ପାନେ ହୋଇବ ସୁଖୀ ।'
(ଛ୍ର୭୦।୭)

ରାଧାଙ୍କୁ ନେଇ ସେମାନେ କୃଷ୍ଣଙ୍କ ନିକଟରେ ଉଭା ଅଛିଅଛନ୍ତି । କଳିଳାର ଆଗମନ ପରେ ଗୃହକୁ ପ୍ରତ୍ୟାଗତ ହୋଇ ରାଧାଙ୍କ ବିରହଦଶା ଦେଖି ସେମାନେ ଚିନ୍ତାନ୍ୱିତା ହୋଇ ରାଧାଙ୍କୁ ଗୋପେଶ୍ୱର ଶିବ ପୂଜିବାକୁ ନେଇ ଯାଇଅଛନ୍ତି । ରାଧାଙ୍କ ବାଚିକ ସନ୍ଦେଶ ମଧ୍ୟ କୃଷ୍ଣଙ୍କ ନିକଟରେ ଉପସ୍ଥାପିତ କରାଇଅଛନ୍ତି ଓ କୃଷ୍ଣଙ୍କ ବିଷୟ ରାଧାଙ୍କୁ ଜଣାଇଅଛନ୍ତି । କୁଞ୍ଜରେ ଶ୍ରୀକୃଷ୍ଣ ଏକାକୀ ପ୍ରତୀକ୍ଷାକୁଳ ହୃଦୟରେ ବସିଥିବାବେଳେ ବୃନ୍ଦା ରାଧାଙ୍କୁ ତାହାଙ୍କ ନିକଟକୁ ନେବା ଲାଗି ସ୍ଥିର କରିଅଛି ଓ ରାଧାଙ୍କୁ କୃଷ୍ଣଙ୍କୁ ଦିବା ଲଗି ଅନୁରୋଧ କରିଅଛି । ସଙ୍ଗିନୀମାନେ ରାଧାଙ୍କୁ ଦିବ୍ୟ ଅଳଙ୍କାର ବେଶରେ ସଜ୍ଜିତ କରିଅଛନ୍ତି (୮୦ଶ ଛାନ୍ଦ) ଓ ରାଧାଙ୍କୁ ନେଇ କୃଷ୍ଣଙ୍କ ନିକଟରେ ଉପସ୍ଥିତ କରାଇଅଛନ୍ତି । ତାପରେ—

'କରାଇ କଳପନା ଅଳନ୍ଧ ବନ୍ଦାପନା
ଶ୍ରୀରାଧା ହସ୍ତେ ସଖୀମାନେ
ସେ ହସ୍ତରୁ ସୁମନେ ଅଞ୍ଜଳିକି ସୁମନେ
ଢାଳିଲେ ପଦ-ନଳିନେ ସେ ।'
(ଛ୍ର ୮୧।୭୩)

ସଖୀମାନେ ରାଧାକୃଷ୍ଣଙ୍କ ମିଳନ ପରେ କୁଞ୍ଜରୁ ଅନ୍ତର ହୋଇ-ଯାଇଛନ୍ତି । ମିଳନ ବାସରର ଶେଷ ଯାମରେ ସେମାନେ କ୍ଲାନ୍ତ ରାଧାଙ୍କୁ ଚନ୍ଦ୍ରରେଖା ପୁରକୁ ନେଇଅଛନ୍ତି ଓ ତାହାଙ୍କ ସ୍ନାନ ମାର୍ଜନାଦି ପରିଚର୍ଯ୍ୟା କରି ପୁନଶ୍ଚ ତାହାଙ୍କ ବେଶ ରଚନାରେ ନିୟୋଜିତ ହୋଇଅଛନ୍ତି ।

ବୈଷ୍ଣବ ତତ୍ତ୍ୱଗ୍ରନ୍ଥ ତଥା ସାହିତ୍ୟରେ ଶ୍ରୀରାଧାଙ୍କର ପଞ୍ଚବିଧ ସଖୀ (ସଖୀ, ନିତ୍ୟ ସଖୀ, ପ୍ରାଣ ସଖୀ, ପ୍ରିୟ ସଖୀ, ପରମ ଶ୍ରେଷ୍ଠ ସଖୀ) ମଧ୍ୟରୁ ପରମ ଶ୍ରେଷ୍ଠ ସଖୀମାନେ ସର୍ବୋତ୍ତମା । ଲଳିତା, ବିଶାଖା, ଚିତ୍ରା, ଚମ୍ପକ ଲତା, ତୁଙ୍ଗ ବିଦ୍ୟା, ଇନ୍ଦୁରେଖା, ରଙ୍ଗ ଦେବୀ, ସୁଦେବୀ ପ୍ରଭୃତି ଅଷ୍ଟସଖୀ ପରମ ଶ୍ରେଷ୍ଠ ସଖୀ ରୂପେ ସୁବିଦିତା । ରାଧାକୃଷ୍ଣଙ୍କର ପ୍ରେମଲୀଳା ଓ ଗୁଣ କୀର୍ତ୍ତନ, ଆସକ୍ତି ସଂପାଦନ, ଅଭିସାରିରେ ନିୟୋଜନ, ବେଶ ବିନ୍ୟାସ, କୃଷ୍ଣଙ୍କୁ ନାୟିକା ସମର୍ପଣ, ସାନ୍ତ୍ୱନା ପ୍ରଦାନ, ପରିହାସ ପତ୍ର ପ୍ରେରଣ, କୁମରୀର ସେବା, ସଂବାଦ ପ୍ରେରଣ, ନାୟିକାର ପ୍ରାଣରକ୍ଷାଲାଗି ପ୍ରଚେଷ୍ଟା ପ୍ରଭୃତି ସଖୀର କାର୍ଯ୍ୟ ଭାବେ ସୁବିଦିତ ।

### ସଖା

କୃଷ୍ଣଙ୍କ ପ୍ରିୟ ମିତ୍ର ମଧୁମଙ୍ଗଳ, ସୁବଳ, ସୁଦାମ ଓ ଦାମଙ୍କ ବିଷୟ ମଧ୍ୟ ଏହି କାବ୍ୟର ବିଭିନ୍ନ ସ୍ଥାନରେ ଉଲ୍ଲିଖିତ । 'ବିଦଗ୍ଧ ମାଧବ'ରେ ମଧୁମଙ୍ଗଳ ସାନ୍ଦୀପନି ମୁନିଙ୍କ ପୁତ୍ର ଭାବରେ ପରିଚିତ । ତାହାଙ୍କୁ ପୌର୍ଣ୍ଣମାସୀ କୃଷ୍ଣଙ୍କ ସଖାରୂପେ ନିୟୋଜିତ କରିଅଛନ୍ତି । (୧ମ ଅ । ୩୮)

ବିଦଗ୍ଧ ଚିନ୍ତାମଣିରେ ମଧୁମଙ୍ଗଳ ଶ୍ରୀକୃଷ୍ଣଙ୍କୁ ପ୍ରୀତି-ତତ୍ତ୍ୱ ବୁଝାଇବା ବିଷୟ ବର୍ଣ୍ଣିତ ହୋଇଅଛି । (ଛାନ୍ଦ ୮)

ସ୍ୱପ୍ନ ମିଳନପରେ କୃଷ୍ଣ ସଖାମାନଙ୍କ ନିକଟରେ ବିଳାପ କରିଅଛନ୍ତି ଓ ସଖାମାନେ କୃଷ୍ଣଙ୍କୁ ସାନ୍ତ୍ୱନା ପ୍ରଦାନ କରିଅଛନ୍ତି । କୃଷ୍ଣଙ୍କର କାନନ-ବିଳାସ କାଳରେ ସଖାମାନେ ତାହାଙ୍କର ସହଚର ଭାବରେ ରହିଅଛନ୍ତି । କୃଷ୍ଣ 'ଗୋରକ୍ଷଣେ' ଯିବାବେଳେ—

'ଆଗରେ କରି ଗୋକୁଳ ପଛେ

ସର୍ବ ସଖାକୁଳ ବେଣୁ ଶୃଙ୍ଗ ରଙ୍ଗେ ବଜାଇଲେ ହେ' (୬୮।୧);

କବି ତାହାର ସୁନ୍ଦର ବର୍ଣ୍ଣନା ପ୍ରଦାନ କରି ଲେଖିଛନ୍ତି—

'ପୋଏ ସଜାଡ଼ି          ଲାଉଡ଼ା ଭିଡ଼ି
ଧାଡ଼ିକି ଧାଡ଼ି          ଆଗେ ଦଉଡ଼ି
ଯୋଡ଼ିକି ଯୋଡ଼ି          ବୃନ୍ଦେ ବାଡ଼ି
ତଳୁକୁ ଆଡ଼ ଯେ

କେହୁ ଘଉଡ଼ି ନଅଇ ତଡ଼ି
କେହୁ ବାହୁଡ଼ି ମାରଇ ଓଡ଼ି
ବାହାକୁ ମୋଡ଼ି ଗୁଡ଼ଇ ରଡ଼ି
ଶିରକୁ ଝାଡ଼ି ଯେ
କେ ମାଲ ବନ୍ଧାଣରେ ଯାଉଛୁ ଗଡ଼ି ଯେ
କେ କାହା ଉରେ ପୁଣି ବଯାଇ ମାଡ଼ି ଯେ ।

(ଗ୍ର ୬୫ । ୨)

ଏହିପରି ବିବିଧ କ୍ରୀଡ଼ା କୌତୁକ, ନୃତ୍ୟ, ଗୀତ-ଗାନ, ରମଣୀ ନାୟିମାନଙ୍କ ସହ ପରିହାସରେ (ଗ୍ର: ୬୫ ଓ ୬୭) ତାହାଙ୍କ କାଳ ଅତିବାହିତ ହୁଏ । କୃଷ୍ଣ ବନରେ ସଖାମାନଙ୍କ ସହ ଗୋଚାରଣ କରନ୍ତି ଓ ସେମାନଙ୍କ ସହ ବିବିଧ କ୍ରୀଡ଼ା କୌତୁକପୂର୍ବକ ଗୋଷ୍ଠକୁ ପ୍ରତ୍ୟାବର୍ତ୍ତନ କରନ୍ତି (୪୮ଶ ଗ୍ରନ୍ଥ) । ରାଧାକୃଷ୍ଣଙ୍କ କୁଞ୍ଜ ମିଳନ ପରେ ସଖାମାନେ କୃଷ୍ଣଙ୍କୁ ପରିହାସ କରିଥିବା ବିଷୟ ଏହି କାବ୍ୟରେ ବର୍ଣ୍ଣିତ ହୋଇଅଛି (ଗ୍ର: ୮୭) । ରାଧିକାଙ୍କ ବେଶ ଧାରଣ କରିଥିବା ସୁବଳକୁ ରାଧିକା ଭ୍ରମରେ ଜଟିଳା ନେଇଯାଇ ସମସ୍ତଙ୍କ ହାସ୍ୟାସ୍ପଦରେ ଉପହାସିତ ହୋଇଥିଲା । ଏହି ପ୍ରସଙ୍ଗର ଉଲ୍ଲେଖ 'ବିଦଗ୍ଧ ମାଧବ'ରେ ମଧ୍ୟ ପରିଲକ୍ଷିତ ହୋଇଥାଏ ।

ଏହି କାବ୍ୟରେ ରାଧାଙ୍କ ସ୍ୱାମୀ ଚନ୍ଦ୍ରସେଣାର ନାମ ଉଲ୍ଲିଖିତ ହୋଇଥିଲେ ହେଁ ତାହାର କାର୍ଯ୍ୟାବଳୀ ବା ମାନସିକ ପ୍ରତିକ୍ରିୟା ବର୍ଣ୍ଣିତ ହୋଇନାହିଁ । ମାତ୍ର 'ବିଦଗ୍ଧ ମାଧବ' ନାଟକରେ ରାଧାଙ୍କ ସ୍ୱାମୀଙ୍କ ନାମ ଅଭିମନ୍ୟୁ । କୃଷ୍ଣ ରାଧାଙ୍କ ପ୍ରତି ଆକୃଷ୍ଟ ହେବା ଶୁଣି ସେ ସପରିବାର ଗୋପପୁର ତ୍ୟାଗ କରି ମଥୁରା ଯିବାଲାଗି ପ୍ରସ୍ତୁତ ହୋଇଥିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ।

## ରଚନା-ରୀତି ଓ ଆଳଙ୍କାରିକତା—

ବିଦଗ୍ଧ ଚିନ୍ତାମଣି କାବ୍ୟକୁ କେହି କେହି ରୀତି ଯୁଗର ସର୍ବଶ୍ରେଷ୍ଠ କୃତି ଭାବେ ଗ୍ରହଣ କରି ଥାଆନ୍ତି । ଧର୍ମମତ ଦୃଷ୍ଟିରୁ ସଦାନନ୍ଦ କବିସୂର୍ଯ୍ୟ

ଅଭିମନ୍ୟୁଙ୍କର ଗୁରୁ ହେଲେ ହେଁ ଉପେନ୍ଦ୍ର ଭଞ୍ଜଙ୍କୁ ତାହାଙ୍କର କାବ୍ୟ ଗୁରୁ ଭାବେ ଗ୍ରହଣ କରାଯାଇପାରେ । ବିଦଗ୍ଧ ଚିନ୍ତାମଣି ଭଞ୍ଜୀୟ ରୀତି-ପ୍ରଧାନ ଆଖ୍ୟାନ କାବ୍ୟଦ୍ୱାରା ବହୁ ପରିମାଣରେ ପ୍ରଭାବିତ ହୋଇଅଛି । ବିଦଗ୍ଧ-ଚିନ୍ତାମଣିରେ ଅଭିବ୍ୟକ୍ତ ରାଧାକୃଷ୍ଣଙ୍କ ଅପ୍ରାକୃତ ପ୍ରେମ-ଲୀଳା ଭଞ୍ଜୀୟ ପ୍ରଣୟ-ପ୍ରଧାନ ଆଖ୍ୟାନ କାବ୍ୟ ସଦୃଶ ପରିକଳ୍ପିତ ହୋଇଅଛି । ଅଭିମନ୍ୟୁ ଥିଲେ ଯଥାର୍ଥତଃ ଆହରଣ-କୁଶଳ, ସମନ୍ୱୟବାଦୀ କବି । ଏଣୁ ତାହାଙ୍କ ବିଦଗ୍ଧ-ଚିନ୍ତାମଣି କାବ୍ୟରେ ବୈଷ୍ଣବ ରସ ତତ୍ତ୍ୱ, ରୀତିକାବ୍ୟର ଆଳଙ୍କାରିକତା ଓ ପ୍ରେମ-ବିଳାସର ସୌନ୍ଦର୍ଯ୍ୟବୋଧ ର ସମନ୍ୱୟ ପରିଲକ୍ଷିତ ହୋଇଥାଏ । ଏହାହିଁ ଏହି କାବ୍ୟର ବୈଶିଷ୍ଟ୍ୟ । ଏହି କାବ୍ୟ ସଂପର୍କରେ ଯଥାର୍ଥତଃ କୁହାଯାଇଅଛି ଯେ 'ଏଥିରେ ପାଣ୍ଡିତ୍ୟ ଓ କବିତ୍ୱ, ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟ, ଲାଳିତ୍ୟ ଓ ସାରଲ୍ୟ ଏକାଧାରରେ ଠୁଳ ହୋଇଅଛି ।' କବି ମଧ ନିଜ ରଚନା ସଂପର୍କରେ ତାହାହିଁ ସ୍ୱୀକାର କରି ଅଛନ୍ତି—

'ସ୍ୱଜନେ ଆଦର ମିତ୍ର ପରି ଏ କନିଷ୍ଠ
ସବଂ ସୁମନା ସୁରସ କରିଛି ଏକତ୍ର ।'  (୧ମ ଛାନ୍ଦ୪୭)

(ମହୁମାଛି ଫୁଲରୁ ରସ ନେଇ ମହୁଫେଣା ରଚିଲା ଭଳି, ମୁଁ ପଣ୍ଡିତମାନଙ୍କ ଗ୍ରନ୍ଥରୁ ସାର ସଂଗ୍ରହ କରି ଏହି ଗ୍ରନ୍ଥ ରଚନା କରିଅଛି ।)

ମଧ୍ୟଯୁଗର ଅନ୍ୟାନ୍ୟ କବିମାନଙ୍କ ପରି ଅଭିମନ୍ୟୁ ଭାଷା ତଥା ଶୈଳୀର ସମତା ସଂପାଦନ ବିଷୟରେ ମନଯୋଗୀ ନଥିଲେ । ପରନ୍ତୁ ଏହି କାବ୍ୟର ବିଭିନ୍ନ ଛାନ୍ଦରେ ଦାକ୍ଷା, ଗୁଡ଼, ଖର୍ଜୁର, ନାରିକେଳ ପ୍ରଭୃତି ଚତୁର୍ବିଧ ପାକଯୁକ୍ତ ରଚନାରୀତି ସେ ବିନ୍ୟାସ କରିଅଛନ୍ତି ବୋଲି ସ୍ପଷ୍ଟ ଭାବେ ଉଲ୍ଲେଖ କରିଅଛନ୍ତି—

'ଥୋକେ ସ୍ଥଳ ହେବ ଦ୍ରାକ୍ଷା ଗୁଡ଼ କୃତ ପାକ
ଥୋକେ ପାକ ନାରିକେଳ ଖର୍ଜୁର ରୋଚକ ହେ ।'
(୧ମ ଛାନ୍ଦ)

କବି ଏହି କାବ୍ୟଟିକୁ ସଙ୍ଗୀତାମୋଦୀ ଶ୍ରୋତା (ସଙ୍ଗୀତବିଦ୍‌ଙ୍କ ଶ୍ରୁତି ସମ୍ପଦ ), ଧର୍ମ-ପ୍ରାଣ ବୈଷ୍ଣବ ଭକ୍ତ, କାବ୍ୟାମୋଦୀ ପାଠକ (ଛଇଳ ଲୋକର ନବ ଗୁଣବଗ ଛବି) ପ୍ରଭୃତି ସର୍ବବିଧ ବ୍ୟକ୍ତିମାନଙ୍କ ଦ୍ୱାରା ଆଦୃତ କରାଇବା ଉଦ୍ଦେଶ୍ୟରେ ଏଥିରେ ବିବିଧ ଗୁଣ ସନ୍ନିବେଶିତ କରାଇଅଛନ୍ତି । ଏଥିରେ ସେ ଏକାଧାରରେ ଯେପରି ବହୁବିଧ ଛନ୍ଦ, ବୃତ୍ତ ଓ ଅଳଙ୍କାର ସନ୍ନିବେଶିତ କରିଅଛନ୍ତି ସେହିପରି ବୈଷ୍ଣବ ଦର୍ଶନର ତତ୍ତ୍ୱକୁ ମଧ୍ୟ ସୁକୌଶଳରେ ବର୍ଣ୍ଣନା କରିଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ରଚନାରେ ପରିଲକ୍ଷିତ ହେଉଥିବା ଉପମା ଅଳଙ୍କାର, ଅର୍ଥ ଗୌରବ, ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ର ପଦଲାଳିତ୍ୟ ଓ ତିନି ସାହିତ୍ୟ କ୍ଷେତ୍ରରେ ସର୍ବୋତ୍କୃଷ୍ଟ ବିବେଚିତ ହୋଇଥାଏ । ମାତ୍ର 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ ପୂର୍ବୋକ୍ତ ତିନୋଟି ଗୁଣର ଅପୂର୍ବ ସମାବେଶ ହୋଇଅଛି ।' ଓଡ଼ିଶାର କବି ଓ କାବ୍ୟ ସମ୍ପର୍କରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କର ଏହି ଅଭିମତଟି ସମ୍ପୂର୍ଣ୍ଣ ସମୀଚୀନ ମନେହୁଏ—

'ଉପମା ଭଂଜ ବୀରସ୍ୟ ତସ୍ୟୈବ ଶ୍ୱର୍ଥ ଗୌରବମ୍
କଲ୍ଲୋଳେ ପଦ ଲାଳିତ୍ୟମ୍ ସନ୍ତି ଚିନ୍ତାମଣୌ ତ୍ରୟଃ ।'

ଉପମା ପ୍ରୟୋଗରେ କବି କିପରି ମୌଳିକତା ପ୍ରଦର୍ଶନ କରିଅଛନ୍ତି ଓ ତାହା ବର୍ଣ୍ଣିତ ବିଷୟକୁ ସୁସ୍ପଷ୍ଟ କରିବାରେ କିପରି ସୁସମର୍ଥ ହୋଇ-ପାରିଅଛି ତାହାର କେତେଗୋଟି ମାତ୍ର ଉଦାହରଣ ଏଠାରେ ଦିଆଯାଇ-ପାରେ । 'ତପ୍ତ ଲୌହ ପାତ୍ର ମଧ୍ୟ' ପଶିବା ପ୍ରାଣ ସନ୍ତାପିତ, 'ଜାଲ ଧରା ମୀନ ପରି ମନ ଛନ୍ଦାଗୁର', 'କ୍ଷଣକେ ବୁଡ଼ାଏ କ୍ଷଣକେ ପୋଡ଼ାଏ ଲୌହକାର ସଣ୍ଡୁଆସି ପରି', 'ସୁଖ ଜାତ ଉତ୍ପ୍ରେକ୍ଷୁ ଚର୍ବିତ ହେଲବେଳେ ହୋଏ ଯେଉଁପରି', 'କ୍ଷତ ହରଣୀ ଜଗିରେ ଯେମନ୍ତ', 'ଅନ୍ଧର ଲଉଡ଼ି' ପ୍ରଭୃତି ଉପମାଗୁଡ଼ିକ କଭଳି ପ୍ରତ୍ୟକ୍ଷ, ସୂକ୍ଷ୍ମ ଜୀବନ ଉପଲବ୍ଧିର ସୂଚକ ତାହା କହିବା ଅନାବଶ୍ୟକ । ଏହାଛଡ଼ା ଯୁଦ୍ଧ (ଷଟ୍‌ଚତ୍ୱାରିଂଶ ଛାନ୍ଦ ୧୧-୧୩ ପଦ) ସଙ୍ଗୀତ ନୃତ୍ୟ, ରଙ୍ଗଶାଳା, (୨୬ଶ ଛା: । ୮-୧୨) ଶିକାର, କୌତୁକ ପ୍ରଭୃତି ପ୍ରସଙ୍ଗ ମଧ୍ୟ ସାଦୃଶ୍ୟବୋଧକ ବିଷୟ ରୂପରେ କାବ୍ୟର ବିଭିନ୍ନ ସ୍ଥାନରେ ଉଲ୍ଲିଖିତ ହୋଇଅଛି ।

ଉପମା ବ୍ୟବହାରରେ କବି କୃତିତ୍ୱ ପ୍ରଦର୍ଶନ କରିଥିଲେ ହେଁ ବହୁ ସ୍ଥାନରେ ତାହାର ପୁନରୁକ୍ତି ଓ ଗତାନୁଗତିକତା ପରିଲକ୍ଷିତ ହୋଇଥାଏ । ଉଦାହରଣସ୍ୱରୂପ କୁମ୍ଭକାର କୀଟ ପ୍ରାପ୍ତ ରୂପ ଲାଭ, କୁମ୍ଭକାର ଦ୍ୱାରା ପ୍ରାପ୍ତ ଅନ୍ତର୍ଦାହ, ଅଗ୍ନି ବାୟୁର ସଂଯୋଗ, ଶଶୀର ଶଶୀପ୍ରାପ୍ତି, ପଦ୍ମ କୁମୁଦ, ଓ ଚାତକର ଯଥାକ୍ରମେ ରବି, ଚନ୍ଦ୍ର ଓ ନୀରଦ ସହ ରତି ପ୍ରଭୃତିର ଉଲ୍ଲେଖ କାବ୍ୟର ବହୁ ସ୍ଥାନରେ ଦେଖାଯାଏ ।

ଅନ୍ୟାନ୍ୟ ଶବ୍ଦ ଓ ଅର୍ଥାଳଙ୍କାର ପ୍ରୟୋଗରେ କବି କପରି ଦକ୍ଷତା ପ୍ରଦର୍ଶନ କରିଅଛନ୍ତି ତାହା ବିଦଗ୍ଧ ଚିନ୍ତାମଣିର ପ୍ରାୟ ପ୍ରତ୍ୟେକ ଛାନ୍ଦରୁ ହିଁ ଉପଲବ୍ଧ ହୋଇଥାଏ । ବିଶେଷତଃ କବିଙ୍କ କାବ୍ୟରେ ଅନୁପ୍ରାସ, ଯମକ ଓ ଉତ୍ପ୍ରେକ୍ଷା ଅଳଙ୍କାରର ବହୁଳ ପ୍ରୟୋଗ ଦେଖାଯାଏ । ଉଦାହରଣ-ସ୍ୱରୂପ ତୃତୀୟ ଛାନ୍ଦରେ ଅନ୍ତ୍ୟାନୁପ୍ରାସ, ପଞ୍ଚମ ଛାନ୍ଦରେ ଅପୂର୍ବାନୁପ୍ରାସ, ଷଷ୍ଠ ଛାନ୍ଦରେ ଆ-ପୂର୍ବାନୁପ୍ରାସ, ସପ୍ତମ ଛାନ୍ଦରେ ଇ-ପୂର୍ବାନୁପ୍ରାସ, ଅଷ୍ଟମରେ ଉ-ପୂର୍ବାନୁପ୍ରାସ, ନବମ, ଦ୍ୱାବିଂଶ ପଞ୍ଚବିଂଶ ଛାନ୍ଦରେ, ପ୍ରାନ୍ତ୍ୟାନୁପ୍ରାସ, ଦଶମ, ଏକାଦଶ ଓ ଅଷ୍ଟବିଂଶ ଛାନ୍ଦରେ ଆଦ୍ୟ ପ୍ରାନ୍ତ୍ୟାନୁପ୍ରାସ, ୧୩ଶରେ ଅନୁପ୍ରାସ, ଅଷ୍ଟାଦଶ ଛାନ୍ଦରେ ନ ପୂର୍ବାନୁପ୍ରାସ, ଊନବିଂଶ ଛାନ୍ଦରେ ଦ୍ୱିଭଙ୍ଗି ଅନୁପ୍ରାସ, ବିଂଶ ଛାନ୍ଦରେ ତ୍ରିଭଙ୍ଗି ଅନୁପ୍ରାସ, ଏକବିଂଶ ଛାନ୍ଦରେ ମ-ପୂର୍ବାନୁପ୍ରାସ, ତ୍ରୟୋବିଂଶ ଛାନ୍ଦରେ ଆଦ୍ୟ ମଧ୍ୟ ପ୍ରାନ୍ତ୍ୟାନୁପ୍ରାସ, ଚତୁର୍ବିଂଶ ଛାନ୍ଦରେ ଆଦ୍ୟ ବର୍ଣ୍ଣାନୁପ୍ରାସ, ସପ୍ତବିଂଶ ଛାନ୍ଦରେ ବ-ପୂର୍ବାନୁପ୍ରାସ, ପଞ୍ଚତ୍ରିଂଶ ଛାନ୍ଦରେ ଏକବର୍ଣ୍ଣାନୁପ୍ରାସ, ଷଟ୍‌ତ୍ରିଂଶ ଛାନ୍ଦରେ ବିଶ୍ରାମାନୁପ୍ରାସ, ୯୬ଶ ଛାନ୍ଦରେ ଦ-ପୂର୍ବାନୁପ୍ରାସ ପ୍ରଭୃତିର ବ୍ୟବହାର ହୋଇଅଛି ।

ଏହିପରି ୨ୟ ଛାନ୍ଦରେ ଆଦ୍ୟ ଯମକ, ଦ୍ୱାଦଶ ଛାନ୍ଦରେ ମଧ୍ୟ ଯମକ, ୧୪ଶ ଛାନ୍ଦରେ ପଞ୍ଚାକ୍ଷରୀ ଆଦ୍ୟ ଯମକ ବ୍ୟବହାର ହୋଇଅଛି । ଏହାଛଡ଼ା ଅଭଣସ୍ତୋତ୍ର (୪ର୍ଥ ଛାନ୍ଦ), ଅଦ୍ୟନ୍ତ ନିୟମ (୧୫ଶ ଓ ୧୬ଶ ଛାନ୍ଦ), କଚଟତପ ନିୟମ (ସପ୍ତଦଶ ଛାନ୍ଦ), ଅବନା ନିୟମ (ଊନତ୍ରିଂଶ ଛାନ୍ଦ), ସୂକ୍ଷ୍ମାଳଂକାର (ଷଡ୍‌ବିଂଶ ଛାନ୍ଦ), ଚକ୍ର ସିଂହାବଲୋକନ (ତ୍ରୟୋତ୍ରିଂଶ ଛାନ୍ଦ),

ଅବନା ଙ୍କେଳା ନସ୍ଵମ (ସପ୍ତତ୍ରିଂଶ ଛାନ୍ଦ), ରୂପକ (୪୧ ଛାନ୍ଦ), ସିଂହାବଲୋକ (୨୦ଶ ଛାନ୍ଦ) ପ୍ରଭୃତି ଅଲଙ୍କାରମାନଙ୍କର ବ୍ୟବହାର କରି ସେ ସମ୍ପୂର୍ଣ୍ଣ ଗୋଟିଏ ଗୋଟିଏ ଛାନ୍ଦ ରଚନା କରିଅଛନ୍ତି । କେବଳ ୩୪ଶ ଛାନ୍ଦରେ ମହାରୂପକ, ମହା ମହାରୂପକ, ସଭଙ୍ଗ ଶ୍ଳେଷ, ଅଭଙ୍ଗ ଶ୍ଳେଷ, ଭଙ୍ଗାଭଙ୍ଗ ଶ୍ଳେଷ, ଶ୍ଳେଷାନ୍ତର ଶ୍ଳେଷ, ଲକ୍ଷଣା ଶ୍ଳେଷ, ଏକ ପଦ ଶ୍ଳେଷ, ବ୍ୟଙ୍ଗ୍ୟ ଶ୍ଳେଷ, ସଗୋପ୍ୟକ, ନଗୋପ୍ୟକ, ପ୍ରବଳତ ଗୂଢ଼ ଅର୍ଥ, ଲୁପ୍ତମିତ ଗୂଢ଼ ଅର୍ଥ, ଅବନା, ବନା ପ୍ରଭୃତି ୪୨ଗୋଟି ଅଲଙ୍କାରର ବ୍ୟବହାର କରିଅଛନ୍ତି । ୮ଶ ଛାନ୍ଦରେ ମଧ୍ୟ ସେହିପରି ପ୍ରାୟ ୧୩ ଗୋଟି ଅଲଙ୍କାରର ବ୍ୟବହାର ଦେଖାଯାଏ । ଏହିପରି ବହୁ ଅଲଙ୍କାର ଓ କଠିନ ଶବ୍ଦମାନଙ୍କର ଯୋଜନା ଯୋଗୁଁ ତାହାଙ୍କ ରଚନା ସେ ପଣ୍ଡିତମାନଙ୍କ ନିମିତ୍ତ ମୁଖ୍ୟତଃ ଉଦ୍ଦିଷ୍ଟ ଏହା କହିବା ବାହୁଲ୍ୟ ମାତ୍ର । କବି ମଧ୍ୟ ଏ ବିଷୟରେ ସଚେତନ ଥିଲେ । ଏଣୁ ସେ ଲେଖିଥିଲେ —

> 'ବିଦଗ୍ଧ ଏ ବିଦଗ୍ଧ ଚିନ୍ତାମଣି ପ୍ରବନ୍ଧ
> ବୁଧଙ୍କ ମନକୁ ବୋଧକ ଅଜ୍ଞ ଏଥିକି ଅନ୍ଧ ।'

ସଂସ୍କୃତ ଆଲଙ୍କାରିକମାନଙ୍କ ବ୍ୟବସ୍ଥା ଅନୁସାରେ କାବ୍ୟର ଆଦ୍ୟରେ ଆଶୀର୍ବାଦ ଭିକ୍ଷା, ଉପାସ୍ୟ ଦେବତାଙ୍କୁ ନମସ୍କାର, ବର୍ଣ୍ଣିତ ବିଷୟର ସୂଚନା, ସାଧୁମାନଙ୍କ ଗୁଣ କୀର୍ତ୍ତନ ଓ ଖଳ ନିନ୍ଦା ବର୍ଣ୍ଣନା ହୋଇଥାଏ ।

> 'ଆଦୌ ଆଶୀର୍ନମସ୍କ୍ରିୟା ବସ୍ତୁ ନିର୍ଦ୍ଦେଶ ଏବବା
> କ୍ୱଚିନ୍ନିନ୍ଦା ଖଳାଦୀନାଂ ସତାଂଚ ଗୁଣ କୀର୍ତ୍ତନମ୍ ।'
> (ସାହିତ୍ୟ ଦର୍ପଣ—୬ଷ୍ଠ ।୩୧୯)

ଅଭିମନ୍ୟୁ ମଧ୍ୟ ଏହି ଆଲଙ୍କାରିକ ନିର୍ଦ୍ଦେଶ ଅନୁସରଣ କରି ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦରେ ରାଧାକୃଷ୍ଣଙ୍କୁ ବନ୍ଦନା କରିବା ସଙ୍ଗେ ସଙ୍ଗେ ବିଷୟବସ୍ତୁର ସୂଚନା, ଖଳନିନ୍ଦା ଓ ସାଧୁ ପ୍ରଶଂସା ବର୍ଣ୍ଣନା କରିଅଛନ୍ତି । ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦରେ ପଞ୍ଚାଶ ବର୍ଣ୍ଣ ନସ୍ଵମ ଅନୁସୃତ ହୋଇ- ଅଛି; ଅର୍ଥାତ୍ ଅ ଠାରୁ କ୍ଷ ପର୍ଯ୍ୟନ୍ତ ପଚାଶଟି ବର୍ଣ୍ଣମାଳାଦ୍ୟ ଶବ୍ଦର କ୍ରମିକ

ବ୍ୟବହାର ଏହି ଗ୍ରନ୍ଥର ଆଦ୍ୟରେ ହୋଇଅଛି । ସଂସ୍କୃତ ସାହିତ୍ୟରେ ପଞ୍ଚାଶ ବର୍ଣ୍ଣରେ ସ୍ତୁତି ରଚନା ସୁପ୍ରଚଳିତ । ଅ ଠାରୁ କ୍ଷ ପର୍ଯ୍ୟନ୍ତ ମାତୃକା ବର୍ଣ୍ଣର ବ୍ୟବହାର ହୋଇଥିବା ଯୋଗୁଁ ଏତାଦୃଶ ରଚନାକୁ 'ବର୍ଣ୍ଣ ମାତୃକା ପ୍ରବନ୍ଧ' କୁହାଯାଏ । ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କ 'ରୁଦ୍ରସୁଧାନିଧି'ରେ ରୁଦ୍ରଗଣ ପଞ୍ଚାଶ ବର୍ଣ୍ଣରେ ସ୍ତୁତି କରିଥିବା ବିଷୟ ବର୍ଣ୍ଣିତ ହୋଇଅଛି । ୪୪ଶ ଗ୍ରନ୍ଥରେ ମଧ୍ୟ କବି ଚଉତିଶା ନିୟମରେ ଚରଣର ଆଦ୍ୟରେ ଯଥାକ୍ରମେ ବ୍ୟଞ୍ଜନବର୍ଣ୍ଣାଦ୍ୟ ଶବ୍ଦ ବିନ୍ୟାସ କରି ଅଛନ୍ତି ।

ଏହି କାବ୍ୟଟି ଯେ ସଂସ୍କୃତ ସାହିତ୍ୟ ଦ୍ୱାରା ବହୁସ୍ଥଳରେ ପ୍ରଭାବିତ ଏହା କହିବା ଅନାବଶ୍ୟକ । ସଂସ୍କୃତ ବିଦଗ୍ଧ ମାଧବର ଭାଷା ଓ ଭାବକୁ କବି ବହୁ ସ୍ଥାନରେ ଅନୁକରଣ କରିଅଛନ୍ତି । ଉଦାହରଣ ସ୍ୱରୂପ—

'ଅପଃ ଶାଳଗ୍ରାମ ପ୍ଳବନ ଗରିମୋଦ୍‌ଗାର ସରସାଃ
ସୁଧୀଃ କୋବା କୌପୀରପି ନମିତ ମୂର୍ଦ୍ଧା ନ ପିବତି ।'

(ବିଦଗ୍ଧ ମାଧବ ୧।୪)

ଅଭିମନ୍ୟୁ ଏହାକୁ ଅନ୍ୟ ଭଙ୍ଗୀରେ କେବଳ ପ୍ରକାଶ କରିଛନ୍ତି —

'ଅମ୍ଭୁ ଯେ ହେଉ ସେ ହେଉ ଶାଳଗ୍ରାମ ସ୍ନାନେ
ଅଗ୍ରାହ୍ୟ କାହାର ପାଦୋଦକ ନାମ ଜ୍ଞାନେ ।'

(ବି. ଚି. ୧।୮୧)

ପୁନଶ୍ଚ —

'ଉଦୟତି ଯଦି ଭାନୁଃ ପଶ୍ଚିମେ ଦିଗ୍ ବିଭାଗେ
ବିକଶତି ଯଦି ପଦ୍ମଂ ପର୍ବତାନାଂ ଶିଖାଗ୍ରେ
ପ୍ରଚଲତି ଯଦି ମେରୁଃ ଶୀତତାଂ ଯାତି ବହ୍ନିଃ
ନ ଚଳତି ଖଳୁ ବାକ୍ୟଂ ସଜ୍ଜନାନାଂ କଦାଚିତ୍ ।'

ଶୋକର ଭାବ ବିଦଗ୍ଧ ଚିନ୍ତାମଣିରେ ନିମ୍ନୋକ୍ତ ରୂପରେ ଅଭିବ୍ୟକ୍ତି ଲାଭ କରିଅଛି —

'ରସ ଉଛଳିବ କମଳ ଫୁଟିବ ଯଦ୍ୟପି ପର୍ବତ ଶିଖରେ
ରଜତ ବରଷିବ ଆକାଶେ ଭ୍ରମିବ ମେରୁ ହିଁ ଚଳିବ ପ୍ରଖରେ
ରସିକା । ରବି ପଶ୍ଚିମେ ଉଦେହେଲେ
ରାଧା ପତିବ୍ରତା—ବ୍ରତ ଅଚଳନେ ଟାଳିଲେ ଟଳିବ କି ଛଳେ ।'
(୨୦ । ୧୨)

## ବର୍ଣ୍ଣନା କୁଶଳତା ଓ ଚିତ୍ରଣ ଚାତୁର୍ଯ୍ୟ—

କବିଙ୍କ ବର୍ଣ୍ଣନା କୁଶଳତା ଓ ଚିତ୍ରଣ ଚାତୁର୍ଯ୍ୟ ମୁଖ୍ୟତଃ ରସର ଅଭିବ୍ୟକ୍ତି, ମାନବିକ ରୂପ ଓ ପ୍ରକୃତି ଚିତ୍ରଣରେ ପ୍ରତିଫଳିତ । ରସାଭିବ୍ୟକ୍ତି ଦୃଷ୍ଟିରୁ କବି ଅଭିମନ୍ୟୁଙ୍କ ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ । ବୈଷ୍ଣବ କାବ୍ୟମାନଙ୍କରେ ସାଧାରଣତଃ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ରସର ବର୍ଣ୍ଣନା ହୋଇଥାଏ । ଏହି ପଞ୍ଚରସର ଆଲମ୍ବନ ବିଭାବ ଭାବରେ ବୈଷ୍ଣବ କାବ୍ୟ ମାନଙ୍କରେ ପଞ୍ଚବିଧ ଚରିତ୍ର ମଧ୍ୟ ପରିକଳ୍ପିତ ହୋଇଅଛନ୍ତି; ଯଥା—ରାଧା ଓ ଗୋପୀମାନେ ମଧୁର ଭାବରେ, ଯଶୋଦା ବାତ୍ସଲ୍ୟ ଭାବରେ, ମଧୁମଙ୍ଗଳ, ଲଳିତା, ବିଶାଖା ପ୍ରଭୃତି ସଖ୍ୟ ଭାବରେ, ସୁଦାମା, ଅକ୍ରୁର ପ୍ରଭୃତି ଦାସ ଭାବରେ କୃଷ୍ଣଙ୍କ ଉପାସନା କରିଥିବା ପରିକଳ୍ପିତ ।

ବିଦଗ୍ଧ ଚିନ୍ତାମଣି କାବ୍ୟରେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ପ୍ରଭୃତି ଭାବରେ ବର୍ଣ୍ଣନା ଥିଲେ ହେଁ ଏହା ମୁଖ୍ୟତଃ ଶୃଙ୍ଗାର-ରସ ପ୍ରଧାନ । ଏଥିରେ ବୈଷ୍ଣବ ପ୍ରେମ ଭକ୍ତିର ତାତ୍ତ୍ୱିକ ଆଲୋଚନା (ଶାନ୍ତ), ସଖା ସଖୀଙ୍କ ସହ ହାସ୍ୟ, ପରିହାସ, ଗୋଷ୍ଠଚାରଣ କ୍ରୀଡ଼ା କୌତୁକାଦି (ସଖ୍ୟ), ଯଶୋଦାଙ୍କ ଶୋକ (ବାତ୍ସଲ୍ୟ) ଓ ରାଧା କୃଷ୍ଣଙ୍କ ପ୍ରେମଲୀଳା (ମଧୁର ରସ) ବର୍ଣ୍ଣିତ ହୋଇଅଛି । ଗୌଡ଼ୀୟ ବୈଷ୍ଣବମାନଙ୍କ ମତରେ ଉପାସ୍ୟ ଦେବ ଦେବୀଙ୍କ ପ୍ରେମ ଉଜ୍ଜ୍ୱଳରସ ବା ମଧୁର ରସ ପର୍ଯ୍ୟାୟଭୁକ୍ତ । ଏହି ଅତୀନ୍ଦ୍ରିୟ ବା ଲୋକୋତ୍ତର ଚେତନା ସମ୍ଭୂତ ଦିବ୍ୟ ପ୍ରେମ ରସାସ୍ୱାଦନ ହିଁ ଭକ୍ତ ଜୀବନର ଶ୍ରେଷ୍ଠ ଅଭିଳାଷ । କବିଙ୍କ ଭାଷାରେ—

'ପଞ୍ଚରସ ସାର ଏ ଯେନ ଯେନ
ଏ ପାଞ୍ଚ ରସେ ମଧୁର ପ୍ରଧାନ ।'

କବି ଏହି କାବ୍ୟରେ ପ୍ରାୟ ସର୍ବତ୍ର ରାଧା ଓ କୃଷ୍ଣଙ୍କ ବିପ୍ରଲମ୍ଭର, ବିରହ ବେଦନାର ବର୍ଣ୍ଣନା କରିଅଛନ୍ତି; ଦୁହିଁଙ୍କର ଆଗ୍ରହତା ଓ ଅନନ୍ୟୋ ନିବିଡ଼ ଆକର୍ଷଣରେ ଚିତ୍ର ଅଙ୍କନ କରିଅଛନ୍ତି । ଲୌକିକଭାବରେ ଏହି ପ୍ରଣୟ ପ୍ରସଙ୍ଗ ବର୍ଣ୍ଣିତ ହୋଇଥିଲେହେଁ ତାହା ଅଲୌକିକତା ବ୍ୟଞ୍ଜକ; ମାନବିକ ଅନୁଭୂତି ମାଧ୍ୟମରେ ତାହା ପାଠକକୁ ଅତି ମାନବିକ ବା ଦିବ୍ୟ-ପ୍ରେମାନୁଭୂତିର ବିବରଣୀ ଶୁଣାଇଥାଏ ।

ବାତ୍ସଲ୍ୟ ଭାବାଶ୍ରୟୀ ଗୀତ ସ୍ତବକରେ 'ଏ ହସ୍ତିରୁ ଯେନ ଧୀରେ' (ଗୀ: ୬୪), 'ଆରେ ବାବୁ ଶ୍ୟାମ ଘନ' (ଗୀ: ୬୭) 'ଧୀରେ ଯେନ ଏ ସାତରେ' (ଗୀ: ୮୬) ପ୍ରଭୃତି ଆଦ୍ୟ ଚଉତିଶା ଅଙ୍କିତ ଗୀତଗୁଡ଼ିକ ସୁପ୍ରସିଦ୍ଧ ।

ମଧ୍ୟ ଯୁଗର କାବ୍ୟ ସାହିତ୍ୟରେ ବିଭିନ୍ନ ପ୍ରସଙ୍ଗରେ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାର ବହୁଳ ନିଦର୍ଶନ ଦେଖିବାକୁ ମିଳିଥାଏ । ବିଶେଷତଃ ନାୟକ ନାୟିକାଙ୍କ ରୂପ ଓ ବେଶଭୂଷା ବର୍ଣ୍ଣନା ଲାଗି ତତ୍କାଳୀନ କବି-ମାନସ କୌଣସି କ୍ଲାନ୍ତି ଅନୁଭବ କରୁଥିବା ଭଳି ମନେ ହୁଏ ନାହିଁ । ଉଦାହରଣ-ସ୍ୱରୂପ ଉପେନ୍ଦ୍ର ଭଞ୍ଜଙ୍କ ସୁଭଦ୍ରାପରିଣୟର ପ୍ରାୟ ଗୋଟିଏ ଗୀତ ସୁଭଦ୍ରାଙ୍କ କେଶ ଗୁଚ୍ଛର ଟିକିନିଖି ବର୍ଣ୍ଣନାରେ ନିୟୋଜିତ । ଅଲୋଚ୍ୟ କାବ୍ୟରେ ମଧ୍ୟ ସେହିପରି ରାଧାକୃଷ୍ଣଙ୍କର ରୂପ ବର୍ଣ୍ଣନା ଲାଗି ବହୁ ଗୀତ ନିୟୋଜିତ ହୋଇଅଛି । ୩ୟ, ୨୯ଶ, ୪୬ଶ ଗୀତରେ କୃଷ୍ଣଙ୍କ ରୂପର ଏବଂ ୦ର୍ଥ, ୨୭ଶ ଓ ୪୭ଶ ଗୀତରେ ରାଧାଙ୍କର ରୂପ ବର୍ଣ୍ଣିତ ହୋଇଅଛି । ସମ୍ଭୋଗ ଓ ରତାନ୍ତ ନାୟିକାର ରୂପ ବର୍ଣ୍ଣନାରେ ମଧ୍ୟ କବିଙ୍କ କୁଶଳତା ଉପଲବ୍ଧ ହୁଏ ।

ବହିଃପ୍ରକୃତି ଚିତ୍ରଣ କବିଙ୍କର ଲକ୍ଷ୍ୟ ନହୋଇଥିଲେହେଁ ତାହାର ବର୍ଣ୍ଣନାରେ ମଧ୍ୟ କବି କୁଶଳତା ପ୍ରଦର୍ଶନ କରିଅଛନ୍ତି । ପ୍ରଭାତ ଓ ସନ୍ଧ୍ୟା ବର୍ଣ୍ଣନା (୮୫ଶ ଗୀତ ଓ ୩୦ଶ ଗୀତ) ଓ ବସନ୍ତ ବର୍ଣ୍ଣନା (୭୨ଶ ଗୀତ) ରୁ ତାହା ଉତ୍ତମରୂପେ ଜଣାଯାଏ ।

ଏହାଛଡ଼ା ଗୋଚାରଣ, ଗୋଦୋହନ, ଗୋଧନ ବାହୁଡ଼ା, ସଖାମାନଙ୍କ ସହ ହାସ୍ୟ ପରିହାସ, ବିପଣୀ ବାସିନୀ ବିଭିନ୍ନ ନାରୀଙ୍କ ସହ କୃଷ୍ଣଙ୍କ ପରିହାସୋକ୍ତିର ବର୍ଣ୍ଣନା ମଧ୍ୟ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧିର ସହାୟକ ହୋଇଅଛି ।

ପାଣ୍ଡିତ୍ୟ ଓ କଳ୍ପନା ବିଳାସ—

ବିଦଗ୍ଧ ଚିନ୍ତାମଣି କବିଙ୍କ ବହୁ ଶାସ୍ତ୍ର ଦର୍ଶିତା ଓ କଳ୍ପନା-ବିଳାସର ଉଜ୍ଜ୍ୱଳ ନିଦର୍ଶନ । କବି ବାଲ୍ୟକାଳରେ ସଂସ୍କୃତ ଅମରକୋଷ ଏବଂ କାବ୍ୟ ଅଳଙ୍କାରାଦି ଗ୍ରନ୍ଥ ଅଧ୍ୟୟନ କରିଥିଲେ । ଏତଦ୍‌ବ୍ୟତୀତ ଉପେନ୍ଦ୍ର ଭଂଜ ପ୍ରଭୃତି ରୀତିକାଳୀନ କବିମାନଙ୍କ ରଚନାବଳୀ ସ୍ୱୟଂ ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଓ ବଙ୍ଗୀୟ ବୈଷ୍ଣବ କବିମାନଙ୍କ ରଚନାବଳୀ ପାଠ କରିଥିବା ମଧ୍ୟ ତାହାଙ୍କ କାବ୍ୟରୁ ଜଣାଯାଏ । ହିନ୍ଦୀ, ବଙ୍ଗଳା, ପାର୍ସୀ ଓ ମରହଠୀ ଭାଷାରେ ମଧ୍ୟ ତାହାଙ୍କର ଦକ୍ଷତା ଥିଲା । ଆପଣାର କାବ୍ୟ ସମ୍ପର୍କରେ କବି ଲେଖିଅଛନ୍ତି—

'ନ୍ୟାୟାଦି, ଶାସ୍ତ୍ର, ପୁରାଣ ବେଦାଗମ କାବ୍ୟ
ନ୍ୟାସ କଲି ଲୋକର ଏ ହୋଇବଟି ଭାବ୍ୟ ।'

ବାସ୍ତବିକ୍ ତାହାଙ୍କର ଏହି କାବ୍ୟରେ ବହୁ ଶାସ୍ତ୍ର, ପୁରାଣ, କାବ୍ୟର ପ୍ରସଙ୍ଗ ସୂଚିତ ହୋଇଅଛି । ରାମାୟଣ, ମହାଭାରତ, ବ୍ରହ୍ମବୈବର୍ତ୍ତ ପୁରାଣ, ପଦ୍ମପୁରାଣ, ଶ୍ରୀମଦ୍‌ ଭାଗବତ ପ୍ରଭୃତି ପୁରାଣ ବର୍ଣ୍ଣିତ ବହୁ ପ୍ରସଙ୍ଗ କବି ବିଦଗ୍ଧ ଚିନ୍ତାମଣିର ନାନା ସ୍ଥାନରେ ଉଲ୍ଲେଖ କରିଅଛନ୍ତି । ପୁରାଣ, ଶାସ୍ତ୍ର ଅଧ୍ୟୟନ କରିଥିବା ବ୍ୟକ୍ତି ପକ୍ଷେ ତାହାର ମର୍ମ ଗ୍ରହଣ ବାସ୍ତବିକ କଷ୍ଟକର । ବସନ୍ତ ବର୍ଣ୍ଣନାରେ କବି କିପରି ରାମାୟଣ ପ୍ରସଙ୍ଗକୁ ସଂଯୋଜିତ କରିଅଛନ୍ତି ତାହା ନିମ୍ନୋକ୍ତ ଉଦାହରଣରୁ ଅନୁମେୟ—

କିଏ ଏହି ରାମାୟଣ ରାମଚନ୍ଦ୍ର ସୁଲକ୍ଷଣ ତାରକାଦି ହରିତ ଭୂଷଣ
ବାତ ବିକନିତ ଗୁଣ ପରିଭଂଜନ ନିପୁଣ ଗନ୍ଧ ମାରଦନ ହିଁ ପୂର୍ଣ ହେ
ପ୍ରାଣମିତ । ଜମ୍ବୁବାନ ବିଧିକି ପ୍ରମାଣ
ସୁପଦନରେ ନିପୁଣ ଦଶଇ ତ ବିଶ୍ୱାପଣ ବୀରମଣି ଅନ୍ବିକଟି ପୂର୍ଣ ହେ ॥
(୭୨ । ୨)

ସେହିପରି ବନଭୂମିକୁ ବର୍ଣ୍ଣନା କରିବାକୁ ଯାଇ ସେ ମହାଭାରତ ବିଷୟକୁ ସଂଯୋଜିତ କରିଅଛନ୍ତି—

କିଏ ଭାରତ ଭୂମିତ ଏ ବନ ହୋଇ ପ୍ରତୀତ ସୁଶ୍ରୁ ଥିବାରୁ ସେନୁଚ ସତ
କୃଷ୍ଣ ସଙ୍ଗେ ହୋଇ ସ୍ଥିତ ଅର୍ଜୁନ କାଣ୍ଡ ବିଦିତ ମନ ମାରୁତ ଗତି ବିଦିତ ହେ
ପ୍ରାଣମିତ । ଦ୍ରୋଣ ଦର ସୁତରେ ତହିଁ ତ
ନକୁଳରେ ଆକର୍ଷିତ ହେବାରେ ଦ୍ରୋଣ ବୃହିତ ଆବଳେ ଶସ୍ତ୍ରକୁଭଜିଛୁ ତ ହେ
(୭୨ । ୭)

ଏହିପରି ପୌରାଣିକ ପ୍ରସଙ୍ଗ ଉଲ୍ଲେଖର ଆଉ ଗୋଟିଏ ଉଦାହରଣ ଏଠାରେ ଦିଆଯାଇପାରେ—

'ଜଳ ସୁତ ସୁତ ତା ସୁତ ତା ସୁତ
ତା ସୁତ ସୁତା ତା' ସୁତ
ତା ସୁତ ସୁତା ସୁତ ଦେଲା ଜୀବିତ
ନାଶି ସ୍ନେହେ ବିପରୀତ ହେ ବୀର । (୭୬ । ୪)

(ଅର୍ଥାତ୍ ଜଳର ସୁତ-ପଦ୍ମ, ପଦ୍ମର ସୁତ (ଜାତ) ବ୍ରହ୍ମା, ବ୍ରହ୍ମାଙ୍କ ପୁତ୍ର ମରୀଚ, ମରୀଚଙ୍କ ପୁତ୍ର କଶ୍ୟପ, କଶ୍ୟପଙ୍କ ପୁତ୍ର ଦୈତ୍ୟ ରାଜମାଳୀ, ମାଳୀର ପୁତ୍ର ସୁମାଳୀ, ସୁମାଳୀର କନ୍ୟା ନିକଷା, ନିକଷାର ପୁତ୍ର ରାବଣ । ଏହି ରାବଣ ନାଶି ଲେଉରେ ପ୍ରାଣ ଦେଇଥିଲା । )

ସ୍ୱର୍ଣ୍ଣ ବ୍ୟଞ୍ଜନ ଆୟୁର୍ବେଦ ଓ ଜ୍ୟୋତିଷଶାସ୍ତ୍ରୋକ୍ତ ବହୁ ପ୍ରସଙ୍ଗର ବର୍ଣ୍ଣନା ଏହି କାବ୍ୟରେ ହୋଇଅଛି । ଏଣୁ କବିଙ୍କର ଏହି ବିଷୟରେ ଯଥେଷ୍ଟ ପ୍ରବୀଣତା ଥିବା ସ୍ୱାଭାବିକ ; ଯଥା :—

'ଅନୁପାନ ଯୋଗେ । ଏକ ଔଷଧି ହୁଏ ନାନା ରୋଗେ (୧୪ଛା: ୫୭ ପ)

'ନାଗର କୃଷ୍ଣ ସଙ୍ଗତେ ମିଳାଇବ
ନାଗକେଶର ସୁରସେ ମଣ୍ଡାଇବ
ରୁଚି ପଦ୍ମିନୀ ମୂଳ ତହିଁ ପଡ଼ିବ
ରୁଚିର ପଣପାକରେ ପକାଇବ ।' (୧୦ଛା: ୧୧ପଦ)

ଏହି କାବ୍ୟର ପ୍ରତ୍ୟେକ ଛାନ୍ଦରେ ବିବିଧ ଛନ୍ଦ ଓ ଅଳଙ୍କାର ଯୋଜନାରୁ କବିଙ୍କ ଛନ୍ଦ ଓ ଅଳଙ୍କାର ଶାସ୍ତ୍ରର ପ୍ରବୀଣତା ବିଷୟ ସହଜରେ ପ୍ରତିପନ୍ନ ହୁଏ ।

## ଧର୍ମମତ-ଗୌଡ଼ୀୟ ଦର୍ଶନ ଓ ପ୍ରୀତି ତତ୍ତ୍ୱ —

କବି ଅଭିମନ୍ୟୁ ଥିଲେ ଗୌଡ଼ୀୟ ବୈଷ୍ଣବ ଧର୍ମାବଲମ୍ବୀ । ଗୌଡ଼ୀୟ ବୈଷ୍ଣବ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ତାହାଙ୍କର ଶିକ୍ଷା ତଥା ଦୀକ୍ଷା ଗୁରୁ ଥିବା ବିଷୟ ପୂର୍ବରୁ କୁହାଯାଇଅଛି । ମଧ୍ୟଯୁଗର ବିଶିଷ୍ଟ କବିମାନଙ୍କ ମଧ୍ୟରୁ ସଦାନନ୍ଦ ଅନ୍ୟତମ । ଗୌଡ଼ୀୟ ବୈଷ୍ଣବ ଦୀକ୍ଷା ଗ୍ରହଣ ପୂର୍ବରୁ ତାଙ୍କର ପୈତୃକ ନାମ ଥିଲା ସଦାଶିବ । ସାଧୁଚରଣ ଦାସ ନାମରେ ମଧ୍ୟ ସେ ପରିଚିତ ଥିଲେ । ନୟାଗଡ଼ର ଶରଣକୂଳରେ ସେ ଖ୍ରୀ: ୧୭୩୮ ରେ ଜନ୍ମ ଗ୍ରହଣ କରିଥିଲେ । କଟକ ଜିଲ୍ଲାର ଦାଣ୍ଡିତ ପଡ଼ାରେ ସେ ରସିକ ରାୟ ମଠ ପ୍ରତିଷ୍ଠା କରିଥିଲେ ଓ ସେହିଠାରେ ତାହାଙ୍କର ଅନ୍ତିମ ଜୀବନ ଅତିବାହିତ ହୋଇଥିଲା । ନାମ ଚିନ୍ତାମଣି, ନସ୍ୱା ନୀଳମଣି, ଚୌର ଚିନ୍ତାମଣି, ଲଳିତ ଲୋଚନା, ଯୁଗଳ ରସାମୃତ ଲହରୀ ପ୍ରଭୃତି କାବ୍ୟ ଓ ବହୁ ଚଉତିଶା ସେ ରଚନା କରିଥିଲେ । ତାହାଙ୍କ ଗୌଡ଼ୀୟ ମତବାଦକୁ ବିଷୟ ସ୍ପଷ୍ଟଭାବେ ସ୍ୱୀକାର କରି ସେ 'ନସ୍ୱା ନୀଳମଣି'ରେ ଲେଖିଥିଲେ —

'ଶ୍ରୀ ରୂପ ଗୋସ୍ୱାମୀ ଆଦଙ୍କର ମତ ଯେହ୍ନ
ବେଦ ବଚନୁ ଅଧିକ ଆମ୍ଭେ ମାନୁ ତାହ୍ନ ।'

ସଦାନନ୍ଦଙ୍କର ଅନୁସୃତ ଏହି ଧର୍ମମତ ଦ୍ୱାରା ଅଭିମନ୍ୟୁ ଯେ ସମ୍ପୂର୍ଣ୍ଣଭାବରେ ପ୍ରଭାବିତ ହୋଇଥିଲେ ଏହା କହିବା ଅନାବଶ୍ୟକ । ଉଭୟେ ଆପଣାର ଉପାସ୍ୟ ଦେବତାଙ୍କୁ ଅପ୍ରାକୃତ ପ୍ରେମମୂର୍ତ୍ତି ରୂପେ ଗ୍ରହଣ କରିଅଛନ୍ତି । ସଦାନନ୍ଦ 'ନିସ୍ତାନୀଳମଣି'ରେ ଲେଖିଛନ୍ତି—

'ଅପ୍ରାକୃତ କନ୍ଦର୍ପ ସେ ଆପଣ
ବଳେ କରନ୍ତି ତାଙ୍କୁ ଆକର୍ଷଣ ।'

(୨ୟ ଛନ୍ଦ । ୧ମ ପଦ)

ବିଦଗ୍ଧ ଚିନ୍ତାମଣିରେ କବି ମଧ୍ୟ ତାହାଙ୍କର ଉପାସ୍ୟ ଦେବତାଙ୍କୁ ବନ୍ଦନା କରି ଅନୁରୂପଭାବେ ଲେଖିଛନ୍ତି —

'ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧା ହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରି ଅବତରି ।'

(୧ମ ଛନ୍ଦ । ୧ମ ପଦ)

ଏହି ପ୍ରସଙ୍ଗରେ ଉତ୍କଳୀୟ ବୈଷ୍ଣବ କବି ଦୀନକୃଷ୍ଣ 'ରସକଲ୍ଲୋଳ' କାବ୍ୟରେ ବର୍ଣ୍ଣିତ ତାହାଙ୍କ ଉପାସ୍ୟ ଦେବତାଙ୍କ ବନ୍ଦନା ଉଲ୍ଲେଖନୀୟ । ଦୀନକୃଷ୍ଣ ଉତ୍କଳୀୟ ବୈଷ୍ଣବ ଥିବାରୁ ରସକଲ୍ଲୋଳ କାବ୍ୟରେ ସର୍ବାଦୌ ଜଗନ୍ନାଥଙ୍କର ହିଁ ବନ୍ଦନା କରିଅଛନ୍ତି ଓ ଶ୍ରୀକୃଷ୍ଣଙ୍କ ଅପେକ୍ଷା ଜଗନ୍ନାଥଙ୍କର ଶ୍ରେଷ୍ଠତ୍ୱ ସ୍ୱୀକାର କରିଅଛନ୍ତି—

'କର ସାଧୁଜନମାନେ ମନକୁ ଏକ
କରି ଧୀରେ ଧ୍ୟାନ ନୀଳାଚଳ ନାୟକ ।' ୧ ।

× × × ×

କଚ୍ଛପ, ମତ୍ସ୍ୟାଦି ଅବତାର ଯେତେକ
କରିବାକୁ ଜାତ ଜଗନ୍ନାଥ ଜନକ ।' ୨ ।

(ରସକଲ୍ଲୋଳ । ୧ମ ଛନ୍ଦ)

ଅପ୍ରାକୃତ ପ୍ରେମର ପ୍ରତୀକ ରାଧାକୃଷ୍ଣଙ୍କୁ ଅଭିମନ୍ୟୁ ଆପଣାର ଉପାସ୍ୟ ଦେବଦେବୀ ଭାବେ ଗ୍ରହଣ କରିଥିଲେ । ରାଧାକୃଷ୍ଣଙ୍କ ପ୍ରତି 'ପ୍ରେମ ଭକ୍ତି'ହିଁ ଥିଲା ଅଭିମନ୍ୟୁଙ୍କର ସାଧନା । ସଖୀ ଭାବରେ ତଥା ରାଧାଙ୍କ ଭଳି ସେ କୃଷ୍ଣ-ଭକ୍ତି-ପରାୟଣ ହେବାକୁ କାମନା କରିଥିଲେ । ସେହି ପ୍ରେମ ଭକ୍ତି ପ୍ରତି ଆପଣାର ଗଭୀର ଆସକ୍ତି ପ୍ରକାଶ କରି ଅଭିମନ୍ୟୁ ଲେଖିଥିଲେ—

'ଏମନ୍ତ ମହିମାବନ୍ତ ପ୍ରେମଭକ୍ତି ରସ
ଏକ ଜନ୍ମେ ଅଭିମନ୍ୟୁ କବି କରେ ଅଶ ହେ ।'
(୧।୧୧)

ଏହି କାବ୍ୟରେ କବି ନିଜକୁ ସର୍ବଦା ଦୀନ, ହୀନ, ଅକିଞ୍ଚନ ବୋଲି ଅଭିହିତ କରିଯାଇଅଛନ୍ତି । ରାଧାକୃଷ୍ଣଙ୍କର ସେବାହିଁ ତାହାଙ୍କର ଜୀବନର ଏକମାତ୍ର ଅଭିଳାଷ ବୋଲି ସେ ବ୍ୟକ୍ତ କରିଅଛନ୍ତି । ସାଂସାରିକ ଭୋଗ ଲାଳସା, ସୁନ୍ଦରୀ ନାରୀ, ବିପୁଳ ଐଶ୍ୱର୍ଯ୍ୟ, ଅସୀମ କ୍ଷମତା ଏହିସବୁ ବସ୍ତୁ ତାଙ୍କୁ ଆକୃଷ୍ଟ କରି ପାରି ନାହିଁ । କେବଳ ସଖୀ ଭାବରେ ହିଁ ସେ ରାଧାଙ୍କର ସେବାକରି କୃଷ୍ଣ-ଭକ୍ତି-ସାଧନା ମାର୍ଗରେ ଅଗ୍ରସର ହେବାର କାମନା କରିଅଛନ୍ତି ।

'ଐରାବତ ଗଜ ଅଣିମାଦି ଭୋଗ ମୁକ୍ତି
ଐଶ୍ୱର୍ଯ୍ୟାଦିରେ ମୋ ଚିତ୍ତ ନୋହିବ ଆସକ୍ତ ହେ ।
ଔଷଧୀଶାନନ ହେ ମାଗୁଛି ପଦ ଧରି
ଓ କରିବ ଆଳେ ଦାସୀ ଡାକିଲେ କିଶୋରୀ ।'
(୧ । ୧୨-୧୩)

ଏଣୁ ସଖୀ ଭାବର ଉପାସକଭାବେ ଉପାସ୍ୟ ଦେବ ଦେବୀ ରାଧାକୃଷ୍ଣଙ୍କ ମିଳନ ସମ୍ପାଦନାହିଁ ଏହି କାବ୍ୟର ଲକ୍ଷ୍ୟ । କବିଙ୍କ ଭାଷାରେ—

'ମିଳନ କରାଇଲେ ରାଧା ହରିଙ୍କି
ଲଭିବ ଆନନ୍ଦ ସୁଖ ଲହରୀକ ।' (୧।୨୫)

ଅଥବା—

'ସାର ଯଶ ରଖାଇବ । ସୁଧା ସୁଖ ବଢ଼ାଇବ
ସାମନ୍ତ ସିଂହାର ବୋଲେ ଦାମୋଦର ରାଧା ରୂପେ ମିଳାଇବ ।'

(୨୮।୪୬)

କୃଷ୍ଣ ଭକ୍ତ ବା ପ୍ରୀତକୁ ନାୟିକା ଭେଦରେ ସାଧାରଣୀ, ସମଞ୍ଜସା ଓ ସମର୍ଥା ପ୍ରଭୃତ ଚନ୍ଦ୍ରଭାଗରେ ବିଭକ୍ତ କରାଯାଇଥାଏ । କୁବ୍ଜା ସାଧାରଣୀ, ରୁକ୍ମଣୀ ପ୍ରଭୃତ ଅଷ୍ଟପାଟ ରାଣୀ ସମଞ୍ଜସା ଏବଂ ରାଧା ଓ ତାହାଙ୍କ ସଖୀମାନେ ସମର୍ଥା ନାୟିକା ଭାବରେ ପରିଗୃହୀତ । ଏହି ସମର୍ଥା ନାୟିକା ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠ ପ୍ରେୟସୀ । ରାଧା ଏମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠା । ଶ୍ରୀକୃଷ୍ଣ ଏକମାତ୍ର ତାହାଙ୍କର । ନାରୀ ଧର୍ମ, କୁଳ ଧର୍ମ, ସମାଜ ଧର୍ମ, ଗୃହ ଧର୍ମ, ଦେହ ଧର୍ମ ପ୍ରଭୃତ ସମସ୍ତ ପରିତ୍ୟାଗ କରି ରାଧା ଓ ଗୋପୀମାନେ କୃଷ୍ଣଙ୍କ ଆନନ୍ଦ ଲାଗି କୃଷ୍ଣଙ୍କୁ ଭଲ ପାଇଅଛନ୍ତି । ଏହାହିଁ ରାଗାନୁଗା ଭକ୍ତି-ଏହାର ଅପର ନାମ ପ୍ରୌଢ଼ରତ । ଏହା ଆତ୍ମେନ୍ଦ୍ରିୟ ତୃପ୍ତି ବିରହିତ ଓ ବିଶୁଦ୍ଧ । ମହାଭାବ ସ୍ୱରୂପିଣୀ ରାଧା ହିଁ ଏହାର ପ୍ରତୀକ । ଏହି ରାଗାନୁଗା ଭକ୍ତିରୁ ଲାଳସା,ଉଦ୍‌ବେଗ, ଜାଗର୍ଯ୍ୟା, (ନିଦ୍ରାହୀନତା), ତାନବ (ଶରୀର କ୍ଷୀଣତା), ଜଡ଼ତା, (ଇଷ୍ଟ ଅନିଷ୍ଟ ଜ୍ଞାନ ବିହୀନତା) ବୈୟଗ୍ର୍ୟ, (ଅସହନୀୟ ବିକ୍ଷୋଭ), ବ୍ୟାଧି, ଉନ୍ମାଦ, ମୋହ, ମୃତ୍ୟୁ ପ୍ରଭୃତ ଦଶ ଦଶାର ସୃଷ୍ଟି ହୋଇଥାଏ ।

ଏହି ପ୍ରୀତ ତତ୍ତ୍ୱକୁ କବି ବଦରାଧ ଚନ୍ଦ୍ରାମଣି କାବ୍ୟରେ ବିଶାଖା ଓ ମଧୁମଙ୍ଗଳଙ୍କ ମୁଖରେ କୁହାଇଅଛନ୍ତି । (ଗ୍ରଃ ୩୯ ଓ ୪୬)

'ବଡ଼ କଠିଣ ସେ ପ୍ରୀତ ପାଳିବା
ତୀକ୍ଷ୍ଣ ଅସିଧାରେ ପଥ ଚାଲିବା
ଶୂନ୍ୟ ଆରୋହଣ ଠାରୁ କଠିନ
ପବନ ଫାନ୍ଦେ ଧରିବା ଲକ୍ଷଣ
ପ୍ରୀତ ରକ୍ଷା ଠାରେ
ଯଥା ପାରଦ ରଖିବା ମୁଠାରେ ।'

( ଗ୍ରଃ୩୯ । ୨୧ )

୪ ।

ଭାଷା—

ବିଦଗ୍ଧ ଚିନ୍ତାମଣିରେ ବିବିଧ ଭାଷା-ଶୈଳୀର ନିଦର୍ଶନ ପରିଲକ୍ଷିତ ହୁଏ । ଏଥିରେ ତତ୍ସମ, ତଦ୍‌ଭବ, ଦେଶଜ ଓ ବୈଦେଶିକ ଶବ୍ଦାବଳୀର ସୁମନୋହର ଯୋଜନା ହୋଇଅଛି । କେତେକ ସ୍ଥାନରେ ପ୍ରସଙ୍ଗ ଓ ଚରିତ୍ର ଉପଯୋଗୀ ଭାଷା ବ୍ୟବହୃତ ହୋଇଥିବାର ଦେଖାଯାଏ । କାବ୍ୟର କେତେକ ସ୍ଥଳ ଲୋକ ପ୍ରଚଳିତ ଭାଷାର ସରଳତା ଯେପରି ପରିଲକ୍ଷିତ ହୁଏ ସେହିପରି କେତେକ ଛାନ୍ଦରେ ଶୁଦ୍ଧ ପରିମାର୍ଜିତ ଭାଷାର ଆଡ଼ମ୍ବର ମଧ୍ୟ ପରିଲକ୍ଷିତ ହୋଇଥାଏ । ଏହା ଫଳରେ ସ୍ଥାନେ ସ୍ଥାନେ ରଚନା ଯେପରି ସରଳ ହୋଇଅଛି ସେହିପରି ତାହା ସ୍ଥାନେ ସ୍ଥାନେ ଦୁର୍ବୋଧ ଓ ଗୁରୁଗମ୍ଭୀର ହୋଇଅଛି । କବି କାବ୍ୟରେ ଏତାଦୃଶ ଭାଷା ନିୟୋଜିତ କରିବା ବିଷୟରେ ପୂର୍ଣ୍ଣ ଅବହିତ ଥିଲେ ଓ ଏହା ତତ୍କାଳୀନ ସାହିତ୍ୟିକ ପରମ୍ପରା ବିହିତ ବୋଲି ସେ ସ୍ୱୀକାର କରିଅଛନ୍ତି—

'ଦ୍ରବ୍ୟ ଅଦ୍ରବ୍ୟ ଭାଷାରେ ପଦ ହେବ ସିଦ୍ଧି
ଦେଖି ମହାଜନ ମାର୍ଗ ପରମ୍ପରା ବିଧି ।' (ଛା: ୧ । ୩୪)

ଦୀନକୃଷ୍ଣ, ଧନଞ୍ଜୟ, ସଦାନନ୍ଦ ଓ ଉପେନ୍ଦ୍ର ଭଞ୍ଜ ପ୍ରଭୃତି ସମକାଳୀନ କବି ମଣ୍ଡଳୀ ଭାଷା ବ୍ୟବହାରରେ ଏହିପରି ଉଦାର ନୀତି ଅନୁସରଣ କରୁଥିବା ମଧ୍ୟ ସେମାନଙ୍କ କାବ୍ୟରୁ ଜଣାଯାଏ ।

ଅଭିମନ୍ୟୁ କୃଷ୍ଣଙ୍କ ସହ ସଖା ସଖୀ ଓ ଅନ୍ୟ ନାୟିକାମାନଙ୍କ ହାସ୍ୟ ପରିହାସର ବର୍ଣ୍ଣନା ପ୍ରସଙ୍ଗରେ ସରଳ ଓ ଲୋକ ପ୍ରଚଳିତ ଭାଷା, ବ୍ୟବହାର କରି ସୁବିବେଚନାର କାର୍ଯ୍ୟ କରିଅଛନ୍ତି; ଯଥା :—

'ଉଠି ବିଷଧରେ କୃଷ୍ଣ ଗଣ୍ଡିଆ
କାହା କଟିଛି ତ ଦେଖି ମାଠିଆ
ବୋଲନ୍ତି ବନ୍ଧୁ, ମୁଁ ତୋହର ବେଠିଆ
ପାଣି ଆଣିବାକୁ ମୋତେ ପଠାଅ
ଶୁଣି ଗୋପୀ ହୋଇ ଠିଆ ଯେ
ହସିଲ, ଭାଷିଲ ବଟିଲଙ୍କୁ କାହ୍ନୁ ହେଲୁ ଏଡ଼େ ଅପାଠିଆ ଯେ ।'

ଗୋପାଳମାନଙ୍କର କ୍ରୀଡ଼ା କୌତୁକାଦି ବର୍ଣ୍ଣନାରେ ମଧ୍ୟ କବି ଗ୍ରାମ୍ୟର ଭାଷାରେ ବ୍ୟବହାର କରିଅଛନ୍ତି । ଏହା ରଚନାଟିକୁ ସରସ ଓ ସ୍ୱଭାବସୁନ୍ଦର କରିଅଛି ।

କବି ପରିମାର୍ଜିତ ବା ତତ୍ସମ ଶବ୍ଦ ବହୁଳ ସାଧୁଭାଷା ଉପରେ ଆପଣା କାବ୍ୟରେ ବ୍ୟବହାର କରିଅଛନ୍ତି ତାହାର ନିଦର୍ଶନ ମଧ୍ୟ କାବ୍ୟର ବହୁ ସ୍ଥଳରେ ପରିଲକ୍ଷିତ ହୁଏ ।

'ନାଗରୀ ଚିତ୍ତ ମତ୍ତ ଦ୍ୱିରଦ-ଟୋପ
ଯୁବତୀ ପରମାଦ ମାଦକ କୂପ ।
ନାରୀ ନୟନ ମୀନ ଧରି ଧୀବର
ମାନ-ତରୁ ଛେଦନ ତୀକ୍ଷ୍ଣ କୁଠାର ଯେ
ସଦା ମାନସ ଅଭିଳାଷ ସାଧନ
ରସାମୃତ ଦାୟକ ନବୀନ ଘନ ଯେ ।
ପତି ବରତୀ ମତି ସମ୍ପତ୍ତି ଚୋର
ଚେତନା ହତକାରୀ ମୋହ ନାଶର
ଗର୍ବ-ପର୍ବତ-ଖର୍ବ କାରକ ପବି
ମହାକ୍ଷ ଅନ୍ଧକାର ଛେଦନ ରବି ।'

(ପୃ ୪୧।୩-୬)

ଭାଷାର ସରଳତା ଦୃଷ୍ଟିରୁ ଯଶୋଦାଙ୍କ ବାତ୍ସଲ୍ୟ ଭାବାଶ୍ରିତ 'ଧୀରେ ଦେନ କାନନରେ କୃଷ୍ଣ ବିଳମ୍ବିତ' ଆଦ୍ୟଛତ୍ରାଙ୍କିତ ଛାନ୍ଦଟି ଉଲ୍ଲେଖ-ଯୋଗ୍ୟ ।

'ଡରୁଥାଇ ଅନ୍ଧାରକୁ ରଖି ଯାଅ ଗୋରୁ
ଜନକ ଜନନୀ ସୁଖ କାହିଁ ପାଇଁ ଯାଉ ।
ବୃଦ୍ଧ କାଳେ ତୁ ମୋହର ଏକଇ ନନ୍ଦନ
ହୃଦ ତାପ ହରାଇଲେ ତୁ ହରି ଚନ୍ଦନ ।

ଗୋଟିକା ଅଧାମ ସର ନ ବୁଚଇ ତୋତେ
ନାଚ ଲକ୍ଷ ମାଗୁଥାଇ ଲବଣୀ କେମନ୍ତେ
ଡୋଳ ମୁଁ ଧଇଲେ ଗୋଳ ହୋଇ ଯାଉ ତୁହି
ତୋ ଦୁର୍ବଳ ଦେଖି କାହିଁ ପଶିବଇଁ ମୁହିଁ ।'
(୬୭ ଛାନ୍ଦ । ୪-୭)

ଏହି ଭାଷା ଯେ ସରଳ ଓ ସୁବୋଧ୍ୟ ଏହା କହିବା ଅନାବଶ୍ୟକ । ମାତ୍ର କବି ଯେତେବେଳେ ବର୍ଣ୍ଣନା କରନ୍ତି—

ଦନ୍ତଦନ୍ତି ସମୁଦ୍‌ଗକ — ପ୍ରବାଳ ହାଙ୍କୁଣୀ ଟେକ
ଦର-ବଣିକ କି ଫେଡ଼ି ଭନ୍ଦେ ଥୋଇଛି
ତାର ତାର ତାର ମୋଡ — ଗୋଟି ଗୋଟିକେ ଗନ୍ତେ
କନ୍ଦୁଛି ପଦ୍ମ ଅମ୍ବରେ ପ୍ରତେ ହେଉଛି
ସ୍ଥାନସ୍ଥିତ ନୀଳେନ୍ଦ୍ର ମଣି । ଗୋଟିକେ କି ଭ୍ରମ ଗଲେ କି ହେବ ଗଣି ।

ଦନକୁ କଲେ ବିନାଶ — ବାରୁଣୀରେ ହେଲେ ବଶ
ଦ୍ୟୁମଣି ଦ୍ୱିଦୋଷହତେ ସିନ୍ଧୁ ମଜ୍ଜନ
ଦନ ତାପ ବିନାଶନ — ଶ୍ୟାମସ୍ତ କୂଳ ଖଣ୍ଡନ
ପୂର୍ବ୍ୟରୁ ମାନ ପାଇଲେ ବିଧୁ ବନ୍ଧନ
କର କାନ୍ତି ଯୋଟିଲ ମହୀ । ଜଗତ ସୃଷ୍ଟି ସର୍ଜକ ହେଲା କି ବହି ।
(ଛା ୩୦ । ୪୫)

ସେତେବେଳେ ସାଧୁ ଶବ୍ଦ ଯୋଜନାର ଆଡ଼ମ୍ବର ବିଷୟରେ ପାଠକ ହୃଷ୍ଟମନରୂପେ ଅବହିତ ହୋଇଥାଏ ।

ଉତ୍କର୍ଷ, ପ୍ରଭାବ ଓ ଓଡ଼ିଆ ସାହିତ୍ୟରେ ଏହାର ସ୍ଥାନ—

ବିଦଗ୍ଧ ଚିନ୍ତାମଣିକୁ କେହି କେହି ଶବ୍ଦଯୁଗର ସର୍ବଶ୍ରେଷ୍ଠ କୃତି-ଭାବେ ଗ୍ରହଣ କରିଥାଆନ୍ତି । ଏ ସମ୍ପର୍କରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଉକ୍ତି ସର୍ବତୋଭାବେ ଯଥାର୍ଥ ମନେହୁଏ । ରାଧାକୃଷ୍ଣଙ୍କ ମିଳନ ଏହି

କାବ୍ୟର ଉପଜୀବ୍ୟ ବିଷୟ ହେଲେହେଁ ଏଥିରେ ରାଧାକୃଷ୍ଣଙ୍କ ପୂର୍ବରାଗର ବିସ୍ତୃତ ବର୍ଣ୍ଣନା ପରିଲକ୍ଷିତ ହୋଇଥାଏ । ନାୟକ ନାୟିକାଙ୍କର ମିଳନ ପୂର୍ବରୁ ଦର୍ଶନ ଓ ଶ୍ରବଣଜନିତ ଯେଉଁ ରତି ପ୍ରକାଶିତ ହୁଏ ରସିକ, ପ୍ରାଜ୍ଞମାନେ ତାହାକୁ 'ପୂର୍ବ ରାଗ' କହିଥାଆନ୍ତି । ଏହା ପ୍ରେମ ପ୍ରବୃତ୍ତିର ପ୍ରାଥମିକ ଅବସ୍ଥା ।

'ରତିର୍ଯା ସଙ୍ଗମାତ୍ପୂର୍ବଂ ଦର୍ଶନ ଶ୍ରବଣାଦିଜା
ତୟୋରୁନ୍ମୀଲ୍ୟତେ ପ୍ରାଜ୍ଞୈଃ ପୂର୍ବରାଗଃ ସ ଉଚ୍ୟତେ ।'
(ଉଜ୍ଜ୍ୱଳ ନୀଳମଣି-ରୂପଗୋସ୍ୱାମୀ)

'ବିଦଗ୍ଧ ମାଧବ' ନାଟକରେ ଶ୍ରୀକୃଷ୍ଣଙ୍କ ନାମ ଶ୍ରବଣ, ବଂଶୀଧ୍ୱନି ଶ୍ରବଣ ଓ ଚିତ୍ରପଟ ଦର୍ଶନ ଯୋଗୁଁ କେବଳ ଶ୍ରୀରାଧାଙ୍କ ପୂର୍ବରାଗ ଉତ୍ପତ୍ତି ବିଷୟ ବର୍ଣ୍ଣିତ ହୋଇଅଛି । ମାତ୍ର ବିଦଗ୍ଧଚିନ୍ତାମଣିରେ ରାଧା ଓ କୃଷ୍ଣ ଉଭୟଙ୍କର ପୂର୍ବରାଗର ବିସ୍ତୃତ ବର୍ଣ୍ଣନା ପରି-ଲକ୍ଷିତ ହୁଏ ।

ରାଧାକୃଷ୍ଣଙ୍କ ପୂର୍ବରାଗ ଓ ନବାନୁରାଗର ବିସ୍ତୃତ ବର୍ଣ୍ଣନା କରି ମଧ୍ୟ କବି ଅଭିମନ୍ୟୁ ସନ୍ତୋଷ ଲାଭ କରି ପାରି ନାହାନ୍ତି । ଉପାସ୍ୟ ଦେବ ଦେବୀଙ୍କ ମିଳନ ହିଁ ତାଙ୍କର କାମ୍ୟ । କବିଙ୍କ ଭାଷାରେ—

'କରି ନବାନୁରାଗ ଭାବ ରଚିତ
ତୋଷ ନୋହେ ସାମନ୍ତ ସିଂହାର ଚିତ୍ତ ଯେ
ମିଳନ କରାଇଲେ ରାଧା ହରିଙ୍କି
ଲଭିବ ଆନନ୍ଦ ସୁଖ ଲହରୀକି ଯେ ।'
(ବି ଚି. ଛାନ୍ଦ ୯ । ୨୫)

ଏଥିପାଇଁ କବି ରାଧାକୃଷ୍ଣଙ୍କୁ ପ୍ରଥମେ ଯୋଗମାୟାଙ୍କ ଯୋଗୁଁ ରାଧାଙ୍କ ଶୟନ ସ୍ଥାନରେ ପରେ ସୂର୍ଯ୍ୟ ପୂଜା ସମୟରେ ଓ ପରିଶେଷରେ କୁଞ୍ଜରେ ଏହିପରି ତିନିଥର ମିଳିତ କରାଇଅଛନ୍ତି । ବିଦଗ୍ଧ ଚିନ୍ତାମଣିର

ବର୍ଣ୍ଣିତ ଶେଷୋକ୍ତ ମିଳନକୁ ବୈଷ୍ଣବ ରସତତ୍ତ୍ୱାନୁଯାୟୀ ସଂକ୍ଷିପ୍ତ ସମ୍ଭୋଗ (ପୂର୍ବରାଗ ପରବର୍ତ୍ତୀ ମିଳନ) କୁହାଯାଇ ପାରେ । ଏହି କାବ୍ୟରେ ରାଧାକୃଷ୍ଣଙ୍କର 'ସଙ୍କୀର୍ଣ୍ଣ ସମ୍ଭୋଗ' (ଅଦୂର ପ୍ରବାସ ପରବର୍ତ୍ତୀ ମିଳନ), ଅଥବା ସମୃଦ୍ଧିମାନ ସମ୍ଭୋଗ (ସୁଦୂର ପ୍ରବାସ ପରବର୍ତ୍ତୀ ମିଳନ)ର ଚିତ୍ର ପରିଲକ୍ଷିତ ହୁଏ ନାହିଁ ।

ମଧ୍ୟକାଳୀନ ଓଡ଼ିଆ କାବ୍ୟ ରଚନାଖଣ୍ଡକୁ ଲକ୍ଷ୍ୟକଲେ ଉକ୍ତତତ୍ତ୍ୱ ପରିବେଷଣ କରିବାରେ ଅଭିମନ୍ୟୁ-ଅପୂର୍ବ ଦକ୍ଷତା ପ୍ରଦର୍ଶନ କରିଅଛନ୍ତି । ସେଥିପାଇଁ ଉକ୍ତତତ୍ତ୍ୱ ବର୍ଣ୍ଣନା ଲାଗି ସେ ଯେପରି ସ୍ୱଗୁରୁ ସଦାନନ୍ଦ କବିସୂର୍ଯ୍ୟ ଓ ଭୂପ ଗୋସ୍ୱାମୀଙ୍କ ନିକଟରେ ଋଣୀ, ସେହିପରି କାବ୍ୟ ରଚନା ଶୈଳୀରେ ଭଞ୍ଜଙ୍କ ଦ୍ୱାରା ବହୁଭାବରେ ପ୍ରଭାବିତ ହୋଇଅଛନ୍ତି । ଲାବଣ୍ୟବତୀରେ ନାୟକ ନାୟିକାଙ୍କ ସ୍ୱପ୍ନ-ମିଳନ ଓ ସ୍ୱପ୍ନାନ୍ତେ ନାୟକ ନାୟିକାଙ୍କ ବିଳାପ ପରି ବିଦଗ୍ଧଚିନ୍ତାମଣିରେ ରାଧାକୃଷ୍ଣଙ୍କର ସ୍ୱପ୍ନ ମିଳନ ଓ ସ୍ୱପ୍ନାନ୍ତେ ଉଭୟଙ୍କ ବିଳାପର ବର୍ଣ୍ଣନା ଦେଖାଯାଏ । ଯୁଗଳ ସ୍ୱପ୍ନ ଦର୍ଶନ ବର୍ଣ୍ଣନାତ୍ମକ ବିଦଗ୍ଧ ଚିନ୍ତାମଣିରେ ୩୦ଶ ଛାନ୍ଦର ଭାଷା, ଭାବ, ଛନ୍ଦ ସହିତ ଲାବଣ୍ୟବତୀର ୧୧ଶ ଛାନ୍ଦର ଭାବ, ଭାଷା ଓ ଛାନ୍ଦର ସାଦୃଶ୍ୟରୁ ଏହି ପ୍ରଭାବ ସହଜରେ ଅନୁମେୟ; ଯଥା:—

ଚନ୍ଦ୍ର ମୁଖ ଚନ୍ଦ୍ର ନଖ          ଛେଦନେ ସାରକ ଚନ୍ଦ୍ର
ଫିଙ୍ଗିଛୁ ତାତ ସିନ୍ଧୁରେ କାମ କି ରୋଷେ
(ଲାବଣ୍ୟବତୀ ୧୧ । ୧)

ତାତ ସିନ୍ଧିକି ବଳିବ          ବିଭୁଷ କି କାମଦେବ
ମାଣିକ୍ୟ ଯାଗ ରଥାଙ୍ଗ ପେଷି ଦେଇଛୁ
(ବି. ଚି. ଛାନ୍ଦ ୩୦ । ୩)

ଉରୁ ଧରି ଦେଲା ଝୁଲାଇ ;
ଧ୍ୱଂସକର ଲାଗି ନିଦ୍ରା ବିନାଶ ହୋଇ
(ଲାବଣ୍ୟବତୀ ଛା: ୧୧-୨୫)

ଏତେ ଶୀଘ୍ର ଆରୂଢ଼ ହୋଇ
ଶୀରୁ ସ୍ୱରୁ ଓରୁ ଧରି ଦେଲେ ହୁଳଇ
(ବି. ଚ. ଚି: ୩୦ । ୩୭)

ଅଭିମାନ ମୁଖଦାସ୍ତୀ　　ଶୋଇଅଛନ୍ତି ଅଭିଆଣେ
ପଲ୍ୟଙ୍କ ଅଙ୍କରେ ଦଣେ ଏମନ୍ତ ଶୋଭା
ରସାଣ ରଜତ ବାଡେ　　କନକ ଲତା କି ଜଡେ
ବିଶଦ ଘନରେ କି ସେ ଚପଳା ପ୍ରଭା
( ଲା. ବ. ଛା. ୧୧ । ୧୨)

ଶଶୀ ଚନ୍ଦ୍ର ବଶ ପାଇଁ　　ପ୍ରୀତି ମୂର୍ତ୍ତିମନ୍ତ ହୋଇ
ଅଭିମାନ ଦେବ ଅଭିଆଇ ଶୋଇଛି
ପାର୍ଶ୍ୱ ଦେବା ଗଣ୍ଡ ତଳେ　　ଶଶୀ ଭୋଜନନ୍ଦ କୋଳେ
ପଦ୍ମଭୃଙ୍ଗବାର ଶୋଭାକୁ ହସି ଦେଉଛି
କୃଷ୍ଣବର୍ଣ୍ଣ ନେସେ ଶଯ୍ୟନ
ସଚ୍ଛଳ ଘନେ ଚକିତ ବିଦ୍ୟୁ ସମାନ ।
( ବି. ଚ. ଚି: ୩୦ । ୧୯ )

ଉପେନ୍ଦ୍ର ଭଞ୍ଜଙ୍କ ପ୍ରଭାବ ସମ୍ପର୍କରେ ମୃତ୍ୟୁଞ୍ଜୟ ରଥ ଯଥାର୍ଥତା ଲେଖିଅଛନ୍ତି, 'ଏହି ବିଦଗ୍ଧ ଚିନ୍ତାମଣିରେ ରାଧାକୃଷ୍ଣଙ୍କର ସ୍ୱରୂପ ଏବଂ ପ୍ରୀତିର ସ୍ୱରୂପର ବର୍ଣ୍ଣନା, ଆଉ ବୈଷ୍ଣବୀୟ ସଖ୍ୟ ଦାସ୍ୟ ଓ ବାତ୍ସଲ୍ୟ ରସର ବର୍ଣ୍ଣନାଂଶ ଛାଡ଼ିଦେଲେ କେଉଁଠାରେ ଯେ ଉପେନ୍ଦ୍ର ଭଞ୍ଜଙ୍କ ଛାୟା ନ ପଡ଼ିଛି ଏମନ୍ତ ନୁହେଁ । କି ଉପମା ଉତ୍ପ୍ରେକ୍ଷା, କି ଯମକାନୁପ୍ରାସ ଜନିତ ରୂପ ବର୍ଣ୍ଣନା ଅଥବା ଅନ୍ୟ ପ୍ରକାର ରଚନା ଭଙ୍ଗୀ, ସର୍ବତ୍ର ଭଞ୍ଜଙ୍କର ଅନୁକରଣ ଅଛି । XXX ବିଦଗ୍ଧଚିନ୍ତାମଣିର ଅଣ୍ଟାଅଣି ଛାନ୍ଦ ଏବଂ ଲାବଣ୍ୟବତୀର ସପ୍ତତ୍ରିଂଶ ଛାନ୍ଦ ଏକାବୃତ୍ତରେ ଏକାଭାବରେ

ପ୍ରାପ୍ତ ହୋଇଛି । ଉଭୟରେ ପ୍ରେମ ପ୍ରେମୀର ବିରହାନୁଚିନ୍ତା ବର୍ଣ୍ଣିତ ହୋଇଅଛି । ଏହାର ଏକତୃତୀୟାଂଶ ଛାନ୍ଦରେ ମଧ୍ୟ ଦ୍ୱାଦଶ ଛାନ୍ଦର ଛାୟା ପଡ଼ିଅଛି ।'

ପୁନଶ୍ଚ ବିଦଗ୍‌ଧଚିନ୍ତାମଣିର ତୁଳନାତ୍ମକ ଉତ୍କର୍ଷ ପ୍ରତିପାଦନ କରିବାକୁ ଯାଇ ପଣ୍ଡିତ ମୃତ୍ୟୁଞ୍ଜୟ ଲେଖିଅଛନ୍ତି— 'ଉଲ୍ଲିଖିତପ୍ରକାର ଶବ୍ଦମାନ କବି ଉପେନ୍ଦ୍ର ଭଞ୍ଜଙ୍କ ଠାରୁ ଗ୍ରହଣ କରିଥିଲେ ହେଁ, ତାହାକୁ ନିଜ ପ୍ରତିଭା ବଳରେ ମାର୍ଜିତ କରିଦେଇ ନୂତନରୂପରେ ପ୍ରତିପାଦିତ କରିଅଛନ୍ତି । X X X ଅନେକ ଉପମା ସହିତ ଭଞ୍ଜଙ୍କ ଉପମାର ସୌସାଦୃଶ୍ୟ ଅଛି ସତ୍ୟ, କିନ୍ତୁ କବିଙ୍କର ଯେତେଗୁଡ଼ିଏ ନିଜସ୍ୱ ଅଛି ତାହା ଅତୀବ ଚମତ୍କାରୀ ।' (୧)

ଜନପ୍ରିୟତା ଦୃଷ୍ଟିରୁ ବିଦଗ୍‌ଧ ଚିନ୍ତାମଣିର ସମକକ୍ଷ କାବ୍ୟ ଓଡ଼ିଆ ସାହିତ୍ୟରେ ବିରଳ । ପରବର୍ତ୍ତୀ କବିମାନଙ୍କ ଏହି କାବ୍ୟ ନାନାଭାବରେ ପ୍ରଭାବିତ କରିଅଛି । ବିଦଗ୍‌ଧଚିନ୍ତାମଣିର ବିଷୟ ଓ ଛାନ୍ଦମାନଙ୍କୁ ଅବଲମ୍ବନ କରି ଦାବାଜୀ ବୈଷ୍ଣବଚରଣ ଦାସ 'ବିଦଗ୍‌ଧ ଚିନ୍ତାମଣି ନାଟକ' ରଚନା କରିଅଛନ୍ତି । ଜଗବନ୍ଧୁ ସିଂହ ମଧ୍ୟ ଏହି କାବ୍ୟର ଛାନ୍ଦମାନଙ୍କୁ ଅବଲମ୍ବନ କରି ବହୁ ଓଡ଼ିଆ ସଙ୍କୀର୍ତ୍ତନ ପ୍ରସ୍ତୁତ କରିଅଛନ୍ତି । ଏହି କାବ୍ୟର 'ଧୀରେ ରାଧାକର ଧରି', ଦୂତୀକର ଧରି ହରି, ଧୀରେ ଘେନ କାନନରେ, ଶ୍ରୀରାଧା ତାରୁନୀ, ରାଧା ଧରି ସଖୀକର, ଧୀର ଚଢ ନନ୍ଦ ପଦ୍ମ ମନ୍ଦିର, ପ୍ରସ୍ଥେରେ ଦୁଃଖୀ ହୋଇ ପଙ୍କଜାକ୍ଷୀ ପ୍ରଭୃତି ଆଦ୍ୟଛତ୍ର ବିଶିଷ୍ଟ ଛାନ୍ଦଗୁଡ଼ିକ ଓଡ଼ିଶାରେ ସର୍ବତ୍ର ଲୋକ ମୁଖରେ ଆବୃତ୍ତି ହୋଇଥାଏ । ବାତ୍ସଲ୍ୟ ରସାଶ୍ରୟୀ ଛାନ୍ଦ ଭାବରେ 'ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ' ଛାନ୍ଦଟି ଓଡ଼ିଆ ସାହିତ୍ୟର ଏକ ଅତୁଳନୀୟ ସୃଷ୍ଟି ।

---

(୧) ଉତ୍କଳ ସାହିତ୍ୟ ୧୮ଶ ଭାଗ ୮ମ ସଂଖ୍ୟା —ମାର୍ଗଶିର (୧୩୨୨ ପୃଷ୍ଠା ୪୨-୪୩)

ଏହି କାବ୍ୟରେ କବି ଗୌଡ଼ୀୟ ଭାବାଦର୍ଶରେ ସମ୍ପୂର୍ଣ୍ଣ ଅନୁପ୍ରାଣିତ, ଅଭିନବତ୍ୱ ଓ ଆତ୍ମବିସ୍ମୃତ ହୋଇ ଅଳଙ୍କାର, ଛନ୍ଦ ଓ ଶବ୍ଦ ଯୋଜନାରେ ଯେପରି କଳାର କଳ୍ପଲୋକ ରଚନା କରିଅଛନ୍ତି ତାହା ଓଡ଼ିଆ ସାହିତ୍ୟରେ ଅତୁଳନୀୟ । କବିଙ୍କ ବର୍ଣ୍ଣିତ ସମସ୍ତ ରସ ସେହି ସର୍ବ ରସାଶ୍ରୟୀ କୃଷ୍ଣ ଓ ରାଧାଙ୍କୁ କେନ୍ଦ୍ର କରି । ଏଣୁ ଲୌକିକ ଅନୁଭୂତିର, ମାଧ୍ୟମରେ ସେହି ଅଲୌକିକତାର ବ୍ୟଞ୍ଜନା ଏହି କାବ୍ୟର ଚରମ ଲକ୍ଷ୍ୟ । ହୁଏ ତ ସେହି ଆଧ୍ୟାତ୍ମିକ ଉପଲବ୍ଧିଠାରୁ ଦୂରରେ ରହି ଆମ୍ଭେମାନେ ଏହି କାବ୍ୟକୁ କେବଳ ଆଂଶିକ ଭାବରେ ଉପଲବ୍ଧି କରିବାକୁ ସମର୍ଥ ହୋଇଥାଉ । କେବେ କେବେ କାବ୍ୟର ସାଗର ତୀରରୁ ଉପଲ ଖଣ୍ଡ ମାତ୍ର ସଂଗ୍ରହ କରୁ । କବି ଅଭିମନ୍ୟୁଙ୍କର ଏହି କାବ୍ୟଟି ସମୟର ପରୀକ୍ଷାରେ ଯେ ଅମୃତତ୍ୱ ଲାଭ କରିଅଛି ଏ ବିଷୟରେ ସନ୍ଦେହର ଅବକାଶ ନାହିଁ ।

କବିବର ରାଧାନାଥ ଏଣୁ ଅଭିମନ୍ୟୁଙ୍କ ଉଦ୍ଦେଶ୍ୟରେ ବଙ୍ଗସ୍ୱଧାରେ ଯଥାର୍ଥ ଲେଖିଥିଲେ —

× × × ×

'ହେ ସୁକବି ଅଭିମନ୍ୟୁ ! ଉତ୍କଳ ଭବନେ
କବି କୁଳଚନ୍ଦ୍ର ତୁମି ଗାଇଲ ସୁସ୍ୱରେ
ସୁକ୍ଷଣେ ବାଜାଇଲେ ବୀଣା ପ୍ରେମାନନ୍ଦ ମନେ
ଗାଇଲ ହେ ମହାଗୀତ ବାନ୍ଧବୀର ବରେ
ସୁଜଳ ମରାଳ ତୁମି କବିତା ସୁଜଳେ
ସୁକଣ୍ଠ କୋକିଳ ସାଧୁ କାବ୍ୟ ଉପବନେ
ଉତ୍କଳ ସରସେ ଯାହା ରୋପିଲ ଯତନେ
ଆପନ ସୁରସମୟୀ ଲେଖନୀର ବଳେ
କୃତାନ୍ତ ବିଜୟୀ କବି । ତୁମି ଏ ଅଞ୍ଚଳେ ।'

**ସମାଜ ଚିତ୍ର—**

ଉପାସ୍ୟ ଦେବତାଙ୍କ ଲୀଳା ବର୍ଣ୍ଣନ କବିଙ୍କର ଏକମାତ୍ର ଲକ୍ଷ୍ୟ ହୋଇଥିବାରୁ ଏହି କାବ୍ୟରେ ସମାଜ ଚିତ୍ରର ଦୃଷ୍ଟାନ୍ତ ବିରଳ ହେବା ଏକାନ୍ତ ସ୍ୱାଭାବିକ । ତଥାପି ସମାଜ ଚିତ୍ରର କେତେକ ନିଦର୍ଶନ ଏଥିରୁ ମିଳିଥାଏ । ଏହା ରଚିତ ହେବା ସମୟରେ ଓଡ଼ିଶାରେ ଗୀତ, ବାଦ୍ୟ ନୃତ୍ୟର ବହୁଳ ପ୍ରଚଳନ ଓ ବିକାଶ ହୋଇଥିଲା । ଏହି କାବ୍ୟର ବହୁ ସ୍ଥାନରେ ନାଟ୍ୟଶାଳା, ସୂତ୍ରଧାର, ନର୍ତ୍ତକୀ, ଯବନିକା, ମୃରଜ ବାଦ୍ୟ ପ୍ରଭୃତିର ଉଲ୍ଲେଖ ଦେଖାଯାଏ । ସ୍ଥାନେ ସ୍ଥାନେ ମଞ୍ଚ ପ୍ରସ୍ତୁତ ହୋଇ ଅଭିନୟ ଓ ନୃତ୍ୟାଦି ହେଉଥିବାର ମଧ୍ୟ ସୂଚନା ମିଳେ । ଏତଦବ୍ୟତୀତ ଶିକାର, ପଶୁପାଳନ ବିଷୟ ମଧ୍ୟ ଏହି କାବ୍ୟର ନାନା ସ୍ଥାନରେ ଉଲ୍ଲିଖିତ ହୋଇଅଛି ।

**ଛାନ୍ଦ—**

ବିଦଗ୍ଧଚିନ୍ତାମଣି କାବ୍ୟରେ ୧୬ ଗୋଟି ଛାନ୍ଦ ବା ଅଧ୍ୟାୟରେ ଓଡ଼ିଆ କାବ୍ୟ ସାହିତ୍ୟରେ ସୁପ୍ରଚଳିତ ପ୍ରାୟ ଅଧିକାଂଶ ଛାନ୍ଦ-ବୃତ୍ତଗୁଡ଼ିକର ବ୍ୟବହାର ଦେଖାଯାଏ । ତନ୍ମଧ୍ୟରୁ ମଙ୍ଗଳ, ରସକୁଲ୍ୟା, କଲ୍ୟାଣ ଆହାରୀ, ଚକ୍ରକେଳୀ, କୁମ୍ଭକାମୋଦ, କଳହା, ବିଭାସ, ଆହାରି, ଭୈରବ, ରାମକେରୀ, କାଳୀ, ଘଣ୍ଟାରବ, କନଡ଼ା, ଭୂପାଳ, କୌଶିକ, ଶଙ୍କରା ଭରଣ, ଶ୍ରେଣୀ, ବଙ୍ଗଳାଶ୍ରୀ, କାମୋଦୀ, ବରାଡ଼ି, ସିନ୍ଧୁଡ଼ା, ଜୟନ୍ତ, ନଳିନୀ ଗୌଡ଼ା ପ୍ରଭୃତି ବୃତ୍ତର ନାମ ଉଲ୍ଲେଖଯୋଗ୍ୟ । ଏଥିରେ ମୋଟ ପ୍ରାୟ ୫୩ ଗୋଟି ଛାନ୍ଦ ବୃତ୍ତର ବ୍ୟବହାର ହୋଇଅଛି ।

**୧ମ ଛାନ୍ଦ—**

ବିଦଗ୍ଧଚିନ୍ତାମଣି ପ୍ରଥମ ଛାନ୍ଦଟି ମଙ୍ଗଳରାଗରେ ରଚିତ । ଏହା କବିଙ୍କ ଗୁରୁ ସଦାନନ୍ଦଙ୍କ 'ଚୌର ଚିନ୍ତାମଣି' ଗ୍ରନ୍ଥର ପ୍ରଭାବ ବୋଲି ମନେହୁଏ । ଚୌର ଚିନ୍ତାମଣିର ଆଦ୍ୟ ଓ ଶେଷ ଛାନ୍ଦ ମଙ୍ଗଳ ରାଗରେ ଲିଖିତ । ମଙ୍ଗଳ ରାଗ ଗାଇବା ଲାଗି କୌଣସି ନିର୍ଦ୍ଧାରିତ ସମୟ ନାହିଁ ।

ଏହା ଯେ କୌଣସି ସମୟରେ ଗାନ କରାଯାଇପାରେ । ତେଣୁ ସେ ଚୌର ଚନ୍ଦ୍ରାମଣିର ଆଦ୍ୟ ଓ ପ୍ରାନ୍ତ ଗ୍ରନ୍ଥକୁ ଏହି ରାଗରେ ରଚନା କରିବାକୁ ଶ୍ରେୟସ୍କର ମନେ କରିଅଛନ୍ତି :—

'ମଙ୍ଗଳ ଆଦ୍ୟ ପ୍ରାନ୍ତରେ ଏ ଗ୍ରନ୍ଥରେ ଜାଣି
ମଙ୍ଗଳ ରାଗେ ଏବେ ହେଁ କହୁଅଛି ପୁଣି । ୧ ।
ସଙ୍ଗୀତରେ ଭାଳବେଲ ଅନ୍ୟ ରାଗଙ୍କର
ମଙ୍ଗଳ ସର୍ବଦା ଗେୟ ଚହିଁ ଏ ଉତ୍ତର ।'
(ଚୌରଚନ୍ଦ୍ରାମଣି ୬୪।୧)

ଓଡ଼ିଆରେ ବହୁ କାବ୍ୟର ପ୍ରଥମ ଛାନ୍ଦ ଏହି ବୃତ୍ତରେ ଲିଖିତ ହୋଇଥିବା ପରିଲକ୍ଷିତ ହୁଏ । ଏହି ବୃତ୍ତରେ ଦୁଇ ପାଦରେ ଏକ ପଦ ହୁଏ । ଏହାର ପ୍ରତ୍ୟେକ ଚରଣ ଚଉଦ ଅକ୍ଷର ବିଶିଷ୍ଟ ହୋଇଥାଏ ଓ ଦ୍ୱିତୀୟ ପାଦର ଶେଷରେ 'ଯେ' 'ହେ' ଯୁକ୍ତ ହୋଇଥାଏ । ପ୍ରଥମ ପାଦର ଅଷ୍ଟମ ଏବଂ ଶେଷ ଅକ୍ଷରରେ ଓ ଦ୍ୱିତୀୟ ପାଦର ଅଷ୍ଟମ, ଦ୍ୱାଦଶ ଓ ଶେଷାକ୍ଷରରେ ଯତିପାତ ହୁଏ ।

୪ର୍ଥ ଛାନ୍ଦ —

ଏହା କଲ୍ୟାଣ ଆହାର ବୃତ୍ତରେ ଲିଖିତ । ପ୍ରାଚୀନ ଓଡ଼ିଆ କାବ୍ୟ ସାହିତ୍ୟର ଏହା ଏକ ବହୁ ପ୍ରଚଳିତ ଛନ୍ଦ । ସଂକ୍ଷେପରେ ଏହା ଆହାରୀ ନାମରେ ମଧ୍ୟ ପରିଚିତ । ଏହାର ପାଞ୍ଚ ପାଦରେ ଏକ ପଦ ହୁଏ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦ ଏକୋଇଶ ଅକ୍ଷର ବିଶିଷ୍ଟ, ତୃତୀୟ ପାଦ ତେରଗୋଟି କମ୍ବା ପାଞ୍ଚଗୋଟି ଅକ୍ଷର ବିଶିଷ୍ଟ ଏବଂ ଚତୁର୍ଥ ପାଦ ନଅ ଗୋଟି ଅକ୍ଷର ବିଶିଷ୍ଟ ହୋଇଥାଏ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦର ଅଷ୍ଟ, ଦ୍ୱାଦଶ, ଅଷ୍ଟାଦଶ ଏବଂ ଶେଷାକ୍ଷର ଉପରେ, ତୃତୀୟ ପାଦର ଶେଷ ଅକ୍ଷର ଉପରେ ଓ ଚତୁର୍ଥ ପାଦର ଷଷ୍ଠ ଓ ଶେଷାକ୍ଷର ଉପରେ ଯତିପାତ ହୁଏ । ପଞ୍ଚମ ପାଦର ଆବୃତ୍ତି ପରେ ତୃତୀୟ ଓ ଚତୁର୍ଥ ପାଦର ପୁନରାବୃତ୍ତି ହୁଏ ।

୩୨ଶ ଛାନ୍ଦ —

ଏହା ଚନ୍ଦ୍ରାକାମୋଦୀ ବୃତ୍ତରେ ଲିଖିତ । ଅଭିମନ୍ୟୁଙ୍କ ପୂର୍ବବର୍ତ୍ତୀ କବିମାନଙ୍କ କାବ୍ୟରେ ଏହି ବୃତ୍ତର ପ୍ରଚଳନ ଦେଖାଯାଏ ନାହିଁ । ଏହି ବୃତ୍ତର ପ୍ରତ୍ୟେକ ପଦ ଚ୍ଚତୁଷ୍ପାଦ ବିଶିଷ୍ଟ । ପ୍ରଥମ ଓ ଦ୍ୱିତୀୟ ପାଦ ଷୋଳଏ ଗୋଟି, ତୃତୀୟ ପଦ ସାତଗୋଟି ଏବଂ ଚତୁର୍ଥ ପାଦ ଦଶଗୋଟି ଅକ୍ଷର ବିଶିଷ୍ଟ । ପ୍ରଥମ ଓ ଦ୍ୱିତୀୟ ପାଦର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷାକ୍ଷରରେ, ଏବଂ ତୃତୀୟ ପାଦର ଦ୍ୱିତୀୟ ଏବଂ ଶେଷ ଅକ୍ଷରରେ ଏବଂ ଚତୁର୍ଥ ପାଦର ଦ୍ୱିତୀୟ, ଅଷ୍ଟମ ଓ ଶେଷ ଅକ୍ଷରରେ ଯତିପାତ ହୋଇଥାଏ । ଚତୁର୍ଥ ପାଦ ଶେଷରେ ତୃତୀୟ ପାଦର ପୁନରାବୃତ୍ତି ହୋଇଥାଏ ।

୩୯ଶ ଓ ୪୨ଶ ଛାନ୍ଦ—

ଏହା ଆଷାଢ଼ ଶୁକ୍ଳ ବାଣୀରେ ଲିଖିତ ।

ଏହି ବୃତ୍ତରେ ଛଅ ପାଦରେ ଏକ ପଦ ହୁଏ । ଏହାର ପ୍ରଥମ ଚ୍ଚତୁଷ୍ପାଦ ଏଗାର ଅକ୍ଷର ବିଶିଷ୍ଟ, ପଞ୍ଚମ ପାଦ ଛଅ ଅକ୍ଷର ବିଶିଷ୍ଟ ଏବଂ ଷଷ୍ଠ ପାଦ ତେର ଗୋଟି ଅକ୍ଷର ବିଶିଷ୍ଟ ହୋଇଥାଏ । ପ୍ରଥମ ଚତୁଷ୍ପାଦ ଓ ଷଷ୍ଠ ପାଦର ପଞ୍ଚମ ଓ ଶେଷ ଅକ୍ଷର ଉପରେ, ପଞ୍ଚମ ପାଦର ଶେଷ ଅକ୍ଷର ଉପରେ ଯତିପାତ ହୁଏ । କେହି କେହି ପଞ୍ଚମ ପାଦକୁ ମଧ୍ୟ ଦୁଇଥର ଆବୃତ୍ତି କରନ୍ତି । ମତାନ୍ତରେ ପ୍ରଥମ ଚ୍ଚତୁଷ୍ପାଦ ଓ ଷଷ୍ଠ ପାଦର ଦ୍ୱିତୀୟ, ପଞ୍ଚମ, ଷଷ୍ଠ ଓ ଶେଷାକ୍ଷରରେ ଓ ପଞ୍ଚମ ପାଦର ପ୍ରଥମ, ତୃତୀୟ ଓ ଶେଷାକ୍ଷରରେ ଯତିପାତ ହୁଏ । ପଞ୍ଚମ ପାଦ ଦୁଇଥର ଆବୃତ୍ତ ହୁଏ ।

୪୬ଶ ଛାନ୍ଦ —

ଏହି ଛାନ୍ଦରେ ବ୍ୟବହୃତ ରାଗ ବା ବୃତ୍ତର ନାମ କେଦାର ଗୌଡ଼ା । ଏହି ବୃତ୍ତ ଚନ୍ଦ୍ରାକୌଶିକ, ରସକଦମ୍ବ ନାମରେ ମଧ୍ୟ ଯଥାକ୍ରମେ ଉପେନ୍ଦ୍ର ଭଞ୍ଜଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' (୧୬ଶ ଛାନ୍ଦ) ଓ ବ୍ରଜନାଥ ବଡ଼ଜେନାଙ୍କ 'ଅମ୍ବିକା ବିଳାସ' (୩୩ଶ ଛାନ୍ଦ) କାବ୍ୟରେ ଅଭିହିତ ହୋଇଅଛି ।

ଏହି ବୃତ୍ତରେ ଛଅ ପଦରେ ଏକ ପଦ ହୁଏ। ପ୍ରଥମ ଓ ଦ୍ୱିତୀୟ ପାଦ ଷୋଡ଼ଶ ଅକ୍ଷର ବିଶିଷ୍ଟ, ତୃତୀୟ ପାଦ ତିନି ଅକ୍ଷର ବିଶିଷ୍ଟ ଏବଂ ଚତୁର୍ଥ, ପଞ୍ଚମ ଓ ଷଷ୍ଠ ପାଦ ଦଶ ଅକ୍ଷର ବିଶିଷ୍ଟ ହୋଇଥାଏ। ପ୍ରଥମ ଓ ଦ୍ୱିତୀୟ ପାଦରେ ଷଷ୍ଠ, ଦ୍ୱାଦଶ ଏବଂ ଶେଷ ଅକ୍ଷର ଉପରେ, ତୃତୀୟ ପାଦର ପ୍ରଥମ ଏବଂ ଶେଷାକ୍ଷରରେ, ଚତୁର୍ଥ, ପଞ୍ଚମ ଓ ଷଷ୍ଠ ପଦର ଦ୍ୱିତୀୟ, ଅଷ୍ଟମ ଓ ଶେଷାକ୍ଷରରେ ଯତିପାତ ହୁଏ। ଚତୁର୍ଥ, ପଞ୍ଚମ ଓ ଷଷ୍ଠ ପାଦ ପରେ ତୃତୀୟ ପାଦର ପୁନରାବୃତ୍ତି ହୋଇଥାଏ।

ବିଦଗ୍ଧ ମାଧବ ଓ ବିଦଗ୍ଧ ଚିନ୍ତାମଣି—

ରୂପ ଗୋସ୍ୱାମୀ ତାହାଙ୍କ ବିଦଗ୍ଧ ମାଧବ ନାଟକଟିକୁ ୧୫୩୮ ସାଲରେ ଲେଖିବାକୁ ଆରମ୍ଭ କରିଥିଲେ। ୧୫୮୯ ସାଲ ବା ୧୫୩୩ ଖ୍ରୀଷ୍ଟାବ୍ଦରେ ଏହା ସମାପ୍ତ ହୋଇଥିଲା। ଏହି ନାଟକର ବହୁ ଅଂଶ ମୁଖ୍ୟତଃ ତାହାଙ୍କ ପୁରୀ ଅବସ୍ଥାନ କାଳରେ ରଚିତ ହୋଇଥିଲା। ଏହି ନାଟକର କିୟଦଂଶ ଶ୍ରୀଚୈତନ୍ୟ ଓ ରାୟ ରାମାନନ୍ଦ ଶ୍ରବଣ କରି ତାହାର ବହୁ ପ୍ରଶଂସା କରିଥିବା ବିଷୟ 'ଚୈତନ୍ୟ ଚରିତାମୃତ'ରୁ ଜଣାଯାଏ।

ବିଦଗ୍ଧ ଚିନ୍ତାମଣି କାବ୍ୟର କଥାବସ୍ତୁର ପରିକଳ୍ପନାରେ ଏହି ନାଟକଟିର ପ୍ରଭାବ ସ୍ୱୀକାର୍ଯ୍ୟ। ବିଦଗ୍ଧ ମାଧବ ନାଟକର 'ବେଣୁନାଦ ବିଳାସ ନାମିତ ପ୍ରଥମ ଅଙ୍କଟି ଭଗବତୀ ପୌର୍ଣ୍ଣମାସୀ ଓ ନାନ୍ଦୀମୁଖୀଙ୍କ କଥୋପକଥନରୁ ଆରମ୍ଭ ହୋଇଅଛି। ଗୋବର୍ଦ୍ଧନଙ୍କ ପତ୍ନୀ ଚନ୍ଦ୍ରାବଳୀଙ୍କ ସହ ମିଳନ, ରାଧାଙ୍କ ସହ ଜଟିଳା ପୁତ୍ର ଅଭିମନ୍ୟୁଙ୍କ ବିବାହ, ଲଳିତାସହ ରାଧାଙ୍କର ସୂର୍ଯ୍ୟପୂଜା ଲାଗି ବୃନ୍ଦାବନକୁ ଆସିବା ଓ କୃଷ୍ଣଙ୍କ ନାମ ଶୁଣିବା ପ୍ରଭୃତି ବିଷୟ ଏହି ଅଙ୍କରେ ବର୍ଣ୍ଣିତ ହୋଇଅଛି। 'ମନ୍ମଥଲେଖ' ନାମିତ ୨ୟ ଅଂଙ୍କରେ ଶ୍ରୀକୃଷ୍ଣଙ୍କ ନିକଟକୁ ପତ୍ର ଦେବା ଲାଗି ପୌର୍ଣ୍ଣମାସୀଙ୍କର ରାଧାଙ୍କୁ ଅନୁରୋଧ, ଲଳିତାର ଶ୍ରୀକୃଷ୍ଣଙ୍କୁ ପ୍ରଣୟ ପତ୍ର ପ୍ରଦାନ, ସୂର୍ଯ୍ୟ ପୂଜା ଲାଗି ଆସିଥିବା ରାଧାଙ୍କ ସହ କୃଷ୍ଣଙ୍କର ପ୍ରଥମ ଦେଖା ପ୍ରଭୃତି ବର୍ଣ୍ଣିତ ହୋଇଅଛି। 'ରାଧା ସଙ୍ଗମ'

ନାମିତ ୩ୟ ଅଂକରେ ରାଧାକୃଷ୍ଣଙ୍କ ମଧ୍ୟରେ ପ୍ରଣୟର ଘନିଷ୍ଠତା ସମ୍ପାଦିତ ହୋଇଅଛି । ରାଧାଙ୍କର ଚରମ ବଧୂର ଅବସ୍ଥା ସମୟରେ କୃଷ୍ଣ ବିଶାଖାଙ୍କୁ ପ୍ରଶ୍ନ ଓ ବିଶାଖାଙ୍କର ପ୍ରତ୍ୟୁତ୍ତର ମଧ୍ୟ ଏହି ଅଂକରେ ବର୍ଣ୍ଣିତ । 'ବେଣୁ ହରଣ' ନାମିତ ୪ର୍ଥ ଅଂକରେ କୃଷ୍ଣଙ୍କ ଠାରୁ ରାଧାଙ୍କର ବେଣୁ ହରଣ, ଚନ୍ଦ୍ରାବଳୀସହ କୃଷ୍ଣଙ୍କର ଆଳାପ, ରାଧାଙ୍କ ଅଭିସାର ଓ ବିବିଧ ନାୟିକା ଲକ୍ଷଣାଶ୍ରୟୀ ରାଧାଙ୍କର ଅବସ୍ଥା ବର୍ଣ୍ଣନ ଓ ରାଧାକୃଷ୍ଣଙ୍କର ଆଳାପ ବର୍ଣ୍ଣିତ । 'ରାଧା ପ୍ରସାଦନ' ନାମିତ ପଂଚମ ଅଂକରେ ରାଧାଙ୍କର ଶାଶୁ ଜଟିଳା ରାଧାଙ୍କଠାରେ କୃଷ୍ଣଙ୍କ ବେଣୁ ଦେଖି ତାହାଙ୍କୁ ଭର୍ତ୍ସନା କରିଅଛନ୍ତି ଓ ରାଧାଙ୍କଠାରୁ ସେହି ବେଣୁଟି ନେଇ ଯାଇଅଛନ୍ତି । ଇତ୍ୟବସରରେ କଳକଣ୍ଠି ନାମକ ବୃଦ୍ଧା ମର୍କଟୀ ଲମ୍ବୁଣୀ ନେଇଯାଉଥିବାର ଦେଖି ଜଟିଳା ତଦୁଦ୍ଦେଶ୍ୟରେ ବେଣୁ ନିକ୍ଷେପ, କରିବାରୁ ବେଣୁଟି ତାହାଙ୍କ ହସ୍ତଚ୍ୟୁତ ହୋଇଅଛି । ଜଟିଳା ରାଧିକା ଭ୍ରମରେ ରାଧିକା ରୂପଧାରୀ ସୁବଳଙ୍କୁ ନେଇ ସମସ୍ତଙ୍କ ଆଗରେ ଦେଖାଇ ଅପଦସ୍ତ ହେବା ପ୍ରଭୃତି ମଧ୍ୟ ଏହି ଅଙ୍କରେ ବର୍ଣ୍ଣିତ । 'ଶରଦ ବିହାର' ନାମିତ ଷଷ୍ଠ ଅଙ୍କରେ ରାଧାକୃଷ୍ଣଙ୍କ ମିଳନ ବର୍ଣ୍ଣିତ । 'ଗୌରୀ ତୀର୍ଥ' ବିହାର ନାମକ ସପ୍ତମ ଅଙ୍କରେ ଚନ୍ଦ୍ରାବଳୀ ଓ କୃଷ୍ଣଙ୍କ ମିଳନ ହୋଇଅଛି । କୃଷ୍ଣ ନିକୁଂଜବିଦ୍ୟା ଛଦ୍ମ ରୂପରେ ରାଧାଙ୍କର ମାନଭଂଜନ କରିଅଛନ୍ତି । ରାଧାଙ୍କ ପ୍ରତି କୃଷ୍ଣ ଆସକ୍ତ ହେବା ଜାଣି ଅଭିମନ୍ୟୁ ରାଧାଙ୍କୁ ନେଇ ସପରିବାର ମଥୁରାଯାତ୍ରା କରିବାକୁ ଅଭିଳାଷୀ ହୋଇଥିଲେ । ମାତ୍ର ପୌର୍ଣ୍ଣମାସୀଙ୍କ ଚକ୍ରାନ୍ତରେ ସେ ତହିଁରୁ ନିବୃତ୍ତ ହୋଇଅଛନ୍ତି । ଅଭିମନ୍ୟୁ ଓ ଜଟିଳା ସହ ରାଧା ଗୌରୀପୂଜା କରିବାକୁ ଆସିଥିବା ସମୟରେ କୃଷ୍ଣ ଛଦ୍ମ ଦେବୀ ବେଶରେ 'ଅଭିମନ୍ୟୁଙ୍କ ଗୋପପୁରରେ ରହିଲେ ମଙ୍ଗଳ ହେବ ଅନ୍ୟଥା କଂସ ଦ୍ୱାରା ଅଭିମନ୍ୟୁର ମୃତ୍ୟୁ ସୁନିଶ୍ଚିତ ।' ଏହା କହିବାରୁ ଅଭିମନ୍ୟୁ ଗୋପପୁରରେ ରହିବା ଲାଗି ନିଷ୍ପତ୍ତି କରିଅଛନ୍ତି ।

କୃଷ୍ଣଙ୍କ ସଖା ଶ୍ରୀଦାମ ରାଧିକାଙ୍କ ଭାଇ । ବିଦଗ୍ଧ ମାଧବରେ ସବିସ୍ତରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ବେଣୁ ଅପହରଣ ବୃତ୍ତାନ୍ତଟି ବିଦଗ୍ଧ ଚନ୍ଦ୍ରାମଣିରେ ପରିଲକ୍ଷିତ ହୁଏ ନାହିଁ । ସେହିପରି ବିଦଗ୍ଧ ମାଧବରେ ବର୍ଣ୍ଣିତ

ଶ୍ରୀକୃଷ୍ଣଙ୍କର ଅଭିମନ୍ୟୁ ଓ ଜଟିଳାଙ୍କୁ ପ୍ରତାରିତ କରିବା ବିଷୟଟି ମଧ୍ୟ ବିଦଗ୍ଧ ଚିନ୍ତାମଣିରେ ପରିଦୃଷ୍ଟ ହୁଏ ନାହିଁ । ଏତଦ୍‌ବ୍ୟତୀତ ବିଦଗ୍ଧଚିନ୍ତାମଣିର କେତେକ ଛାନ୍ଦରେ ବିଦଗ୍ଧ ମାଧବ ନାଟକ ବର୍ଣ୍ଣିତ କେତେକ ଶ୍ଳୋକର ପ୍ରଭାବ ମଧ୍ୟ ଅନୁଭୂତ ହୁଏ । ଉଦାହରଣସ୍ୱରୂପ ବିଦଗ୍ଧ ମାଧବରେ ରାଧା କୃଷ୍ଣଙ୍କ ବଂଶୀଧ୍ୱନିର ପ୍ରଭାବ ବିଷୟ ବର୍ଣ୍ଣନା କରି ସଖୀଙ୍କୁ କହୁଅଛନ୍ତି 'ଏହା ହିମ ନୁହେଁ ତଥାପି ହିମଢଙ୍କ ଏହା ଦେହକୁ କମ୍ପିତ କରୁଅଛୁ, ଶସ୍ତ୍ର ନୁହେଁ ତଥାପି ଏହା ମର୍ମ ଛେଦନ କରୁଅଛୁ, ଏହା ତାପ ନୁହେଁ, ତଥାପି ଜ୍ୱାଳା ଉତ୍ପାଦନ କରୁଅଛୁ । ଏଣୁ ଏହା କି ପ୍ରକାର ମୁରଳୀ ଧ୍ୱନି !'

ଅଜଡ଼ଃ କମ୍ପ ସମ୍ପାଦୀ ଶାସ୍ତ୍ରାଦକୋ ନକୃନ୍ତନଃ
ତାପନୋହନୃଷ୍ଣାତାଧାଣ୍ଡ କୋ ବ ସ୍ୱଂ ମୁରଳୀ ରବଃ ।

(ବିଦଗ୍ଧ ମାଧବ ୧ମ ଅଂକ । ୬୦)

ଅଭିମନ୍ୟୁ ମଧ୍ୟ ସଖୀ ପ୍ରତି ରାଧାଙ୍କ ଉକ୍ତି ଛଳରେ ବଂଶୀଧ୍ୱନିର ପ୍ରଭାବ ବର୍ଣ୍ଣନା କରି ଲେଖିଛନ୍ତି—

'ଅନଳ ନୁହଁଇ ଦେହ ଦହଇ
ଅସ୍ତ୍ର ନୁହଁଇ ମରମେ ଭେଦଇ
ନୁହଇ ତ ଜଳ ବୁଡ଼ାଏ କୂଳ
ନୁହଇ ମାଦକ କରେ ବିହ୍ୱଳ
ନୁହଇ ବଡ଼ଶୀ
ବଳେ ମନ ମୀନ ନିଏ ଆକର୍ଷି ।'

( ଛା: ୩୧ । ୧୮ )

ବିଦଗ୍ଧ ମାଧବରେ କୃଷ୍ଣ-ପ୍ରୀତି ବିଧୁରା ରାଧା ସଖୀପ୍ରତି କହିଛନ୍ତି —

'ଅକାରୁଣ୍ୟଃ କୃଷ୍ଣୋ ଯଦି ମୟି ତବାଗଃ କଥମିଦଂ
ମୁଧା ମା ରୋଦୀର୍ମେ କୁରୁ ପରମିମାମୁତ୍ତରକୃତଂ
ତମାଲସ୍ୟ ସ୍କନ୍ଧେ ସଖି ! କଳିତ ଦୋର୍ବଲ୍ଲରିରିୟଂ
ଯଥା ବୃନ୍ଦାରଣ୍ୟେ ଚିରମବିଚଳା ତିଷ୍ଠତି ତନୁଃ' ।

(୨ । ୬୦)

ଅର୍ଥାତ୍—କୃଷ୍ଣ ଯଦି ମୋ ଉପରେ ଏପରି ଅକରୁଣ ହୁଅନ୍ତି ତେବେ ତୋର ଅପରାଧ କଣ ! ଏପରି ଆଉ ବୃଥା ରୋଦନ କରନା । ପରନ୍ତୁ ତମାଳ ସ୍କନ୍ଧରେ ମୋର ଏଇ ଭୁଜଲତା ଆବଦ୍ଧ କରି ଯେପରି ଚିରକାଳ ଅବିଚଳିତ ଭାବରେ ବୃନ୍ଦାବନରେ ମୋର ଏହି ଦେହ ଅବସ୍ଥାନ କରେ, ଏପରିଭାବରେ ମୋର ଅନ୍ତ୍ୟେଷ୍ଟି କ୍ରିୟା ସମ୍ପନ୍ନ କରିବ ।

ବିଦଗ୍ଧ ଚିନ୍ତାମଣିରେ ଅନୁରୂପ ଭାବରେ ରାଧା ସଖୀ ପ୍ରତି କହୁଛନ୍ତି:—

'ଜୀବନ ଗଲେ ଏତିକି କରିବ
ଶ୍ୟାମ ନାମ ମୋ ଶ୍ରୁତିରେ ଲହିବ ।

ଶ୍ୟାମ ରୂପ ମୂର୍ତ୍ତି ହୃଦେ ଲଦାଇ
ଶ୍ୟାମ ବସନ ଅଙ୍ଗରେ ଘୋଡ଼ାଇ
ଶ୍ୟାମ ଗନ୍ଧ ପଥେ
ମୋ ଶବ ପୋଡିବ ଆପଣା ହସ୍ତେ ।

ଯେବେ ଏମନ୍ତ କରି ନ ପାରିବ
ତମାଳେ କୋଳ କରାଇ ଥୋଇବ ।

କୃଷ୍ଣ ବଂଶୀ ଶୁଭୁଥିବ ଯେତିକି
କର୍ଣ୍ଣ ଡେରି ଦେଉଥିବ ତେଣିକି
ହେବୁ ସଜନୀଙ୍କି
ହାତ ଧରି ମୁଁ ମାଗୁଛି ଏତିକି ।'

( ଗ୍ରୁ: ୩୯ । ୩୬-୩୭)

---

